ପ୍ରକାଶକ
ୟୁନାଇଟେଡ୍ ବୁକ୍ ହାଉସ୍
ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ
୧୯୫୫

କୌଣସି ପେଷାଦାର ନାଟ୍ୟ ଅନୁଷ୍ଠାନକର୍ତ୍ତୃକ
ଏହି ନାଟକର ଅଭିନୟ ଲେଖକଙ୍କ ଅନୁମତିସାପେକ୍ଷ

ମୁଦ୍ରାକର
ଶ୍ରୀ ପଦ୍ମଚରଣ ଦାଶ
ଶ୍ରୀ ସତ୍ୟନାରାୟଣ ପ୍ରେସ
କଟକ—୨

ଏକ ଟଙ୍କା ଆଠଅଣା

Digitized by srujanika@gmail.com

## ଶ୍ରଦ୍ଧାଞ୍ଜଳି

ଉତ୍କଳର ଯେଉଁ ଅନାଦୃତ ଓ ଉପେକ୍ଷିତ କବି, ଲେଖକ,
ସଙ୍ଗୀତଜ୍ଞ, ନାଟ୍ୟକାର ଓ ଚିତ୍ରକରଙ୍କ ଦୁଃଖଦୁର୍ଦ୍ଦଶା
ଦେଖି ମନରେ ଦିନେ ଏହି ନାଟ୍ୟରୂପ
ଜାଗି ଉଠିଥିଲା ତାଙ୍କର ଉଦ୍ଦେଶ୍ୟରେ
ମୋର ଏ ଶ୍ରଦ୍ଧାଞ୍ଜଳି

ଲେଖକ

Digitized by srujanika@gmail.com

# ଅନ୍ନଚନ୍ତା ଚମତ୍କାର

କେଉଁ ଦେଶ କେତେ ମହତ, କେତେ ସଭ୍ୟ, ଏ କଥା ସେ ଦେଶର କୋଠାବାଡ଼ିର ପରିମାଣ, ସୁନା ଖଣିର ବ୍ୟାପକତା, କଳକାରଖାନାର ବାହୁଲ୍ୟରୁ ଜଣାପଡ଼େ ନାହିଁ । ସଭ୍ୟତା ଓ ସଂସ୍କୃତିର ଏକମାତ୍ର ମାପକାଠି ଦେଶର ସାହିତ୍ୟ ଓ ସଙ୍ଗୀତ । ଏହା ତାହାକୁ ଜୀବିତ ରଖେ, ଦେଶରେ ନବ ଜାଗରଣ ଆଣେ । ଦିନ ଥିଲା ଏ ଦେଶର କବିମାନେ ରାଜଦରବାରରେ ଗୋଟିଏ କବିତା ପଢ଼ି କୋଟିଏ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଉଥିଲେ । ଏ ଦେଶର ସଙ୍ଗୀତଜ୍ଞ ଗୋଟିଏ ଗୀତ ଗାଇ ଖଣ୍ଡିଏ ରାଜ୍ୟ ଲାଭ କରି ପାରୁଥିଲେ । ମାତ୍ର ଯାନ୍ତ୍ରିକ ସଭ୍ୟତାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଲୋକେ ଆଉ ସାହିତ୍ୟିକ ବା କଳାକାରମାନଙ୍କ ପ୍ରତି ଦୃଷ୍ଟି ଦେଉ ନାହାନ୍ତି । ତାଙ୍କ ନିକଟରେ କୌଣସି ଶିଳ୍ପାଗାରର ହିସାବ ଫର୍ଦ୍ଦ ଅତି ରମଣୀୟ ସାହିତ୍ୟ, କୌଣସି ବସ୍ତ୍ର ଧୂମ୍ରୋଦ୍‌ଗାରୀ ଯନ୍ତ୍ରର ଝଂ ଝଂ ଶବ୍ଦ ବୀଣାଝଙ୍କାରରୁ ମଧୁରତର । ଫଳରେ ନିଜ ଅଭାବ ମେଣ୍ଟାଇବା ପାଇଁ ଆଜି କବି କରେ କୋଇଲା କମ୍ପାନୀରେ କିରାଣି, ସଙ୍ଗୀତଜ୍ଞ ଖୋଲିଛି ପେଟବଜାରରେ ପାନ ଦୋକାନ । ହାୟ ରେ ନିଷ୍ଠୁର ଦୁନିଆଁ !

ନାଟକଟିର ସାରାଂଶ କଲିକତା ଓ କଟକ ବେତାର କେନ୍ଦ୍ରରୁ ପ୍ରସାରିତ । ଏହାର କିୟଦଂଶ ୧୯୫୨ ମସିହା କୁମାରପୂର୍ଣ୍ଣିମା ଉତ୍ସବ କମିଟିର ଅନୁକୂଲ୍ୟରୁ କୁମାରପୂର୍ଣ୍ଣିମା ଦିନ ନାଟ୍ୟସେବାଙ୍ଗ ସଦନରେ ଅଭିନୀତ । ପୂର୍ଣ୍ଣ ନାଟକଟି ଉତ୍କଳ ଖ୍ରୀଷ୍ଟିୟାନ କଲେଜର ୧୯୫୩ ମସିହା ବାର୍ଷିକ ସପ୍ତାହର ଶେଷ ଦିବସରେ ଉକ୍ତ କଲେଜର ଛାତ୍ରମାନଙ୍କଦ୍ୱାରା ଅଭିନୀତ ।

ଖ୍ରୀଷ୍ଟିୟାନ କଲେଜ ଅଭିନୟର ପରିଚାଳନା ଓ ରୂପାୟନରେ—

## ପରିଚାଳନା ଓ ନିର୍ଦ୍ଦେଶ

ଶ୍ରୀ ଉଦୟନାଥ ମିଶ୍ର, ବି. ଏ.

## ସୁରଶିଳ୍ପୀ ଓ ସଂଗୀତ ପରିଚାଳନା

କିଶୋର କବି ଶ୍ରୀ ଶ୍ୟାମସୁନ୍ଦର ଦାସ

## ରୂପ ଓ ସାଜସଜ୍ଜା

ଶ୍ରୀ ନରସିଂହ ମହାପାତ୍ର

| | |
|---|---|
| ମ୍ୟାନେଜର | ଶ୍ରୀ ନଦଅବିହାରୀ ମହାନ୍ତି |
| ବଡ଼ବାବୁ | ଶ୍ରୀ ରାମଚନ୍ଦ୍ର ମିଶ୍ର |
| ଚପ୍ରାସି | ଶ୍ରୀ ଦ୍ୱିଜରାଜ ଚୌଧୁରୀ |
| ପ୍ରୋମ୍ପଟର ... | ଶ୍ରୀ ଶ୍ରୀଧର ଶେଠି |

Digitized by srujanika@gmail.com

| | | |
|---|---|---|
| ସବ୍‌ଆସିଷ୍ଟାଣ୍ଟ୍ | | |
| ଡିରେକ୍ଟର | ... | ଶ୍ରୀ ହେମନ୍ତକୁମାର ଦାସ |
| କାବୁଲି | | ଶ୍ରୀ ଆଶୁତୋଷ ଦାସ |
| ନନ୍ଦୀ | | ଶ୍ରୀ ଭବାନୀଶଙ୍କର ପଣ୍ଡା |
| ଭୃକୁଟୀ | | ଶ୍ରୀ ବିନୋଦକୁମାର ନାୟକ |
| କ୍ଲିଭେନ୍ସ | | ଶ୍ରୀ ଉମେଶ ସ୍ୱାଇଁ |
| ଚଞ୍ଚଳା | ... | ଶ୍ରୀ ବାଦଲବିହାରୀ ସ୍ୱାଇଁ |
| ରମା | ... | ଶ୍ରୀ କାର୍ତ୍ତିକ ଦାସ |
| ଭବାନୀ | | ଶ୍ରୀ ଅନାଦିଚରଣ ସାହୁ |
| ପିଂକେ | | ଲଲ୍ଲୁ, ଭାନୁ, ବ୍ରଜ, ବ୍ରହ୍ମାନନ୍ଦ, ସତ୍ୟାନନ୍ଦ |

ଘରବାଲି, ସେଠଜୀ, ଗୁଣ୍ଡାସର୍ଦ୍ଦାର ଇତ୍ୟାଦି



Digitized by srujanika@gmail.com

# ପ୍ରଥମ ଦୃଶ୍ୟ

କୋଇଲା କମ୍ପାନୀ ଅଫିସ୍, ଘରଟା ନିତାନ୍ତ ଅପରିଷ୍କାର-ଅପରିଚ୍ଛନ୍ନ । ଅସବାବପତ୍ରମଧ୍ୟରେ ଖଣ୍ଡିଏ ଭଙ୍ଗା ଚୌକି, ଗୋଟିଏ ଛିଣ୍ଡା ବେତପିଣ୍ଡି, ଖଣ୍ଡିଏ ଖଣ୍ଡିଆ ଟେବୁଲ । ଗୋଟେ କଣରେ କିଛି କୋଇଲା ଓ କାଗଜପତ୍ର ପଡ଼ିଛି । ଅନ୍ୟ କଣରେ ଚେଟେଫଇ ସରଞ୍ଜାମ କାଠ ଇତ୍ୟାଦି ।

ବଡ଼ ବ୍ୟତିବ୍ୟସ୍ତ ହୋଇ ମାତ୍ର ଆସିଲେ କୋଇଲା କମ୍ପାନୀ ମେନେଜର । ବେଶଭୂଷା ବଡ଼ ବିଚିତ୍ର ଧରଣର—ଅତ୍ୟନ୍ତ ମଇଳା ପ୍ୟାଣ୍ଟ ଅଣ୍ଟାରେ ମୋଡ଼ା ହୋଇଛି, ପଞ୍ଜାବୀ ଉପରେ କଳା କୋଟ, ତାର ପୁଣି ବୋତାମ ଠିକ୍ ହୋଇ ଦିଆଯାଇନି, ବେକରେ ଖଣ୍ଡେ କଳା କନା ଟାଇ ରୂପେ ଭିଡ଼ାଯାଇଛି, ମୁଣ୍ଡରେ ଗୋଟିଏ ଅତି ପୁରୁଣା ହ୍ୟାଟ୍ ଦଉଡ଼ି ସାହାଯ୍ୟରେ ବନ୍ଧାଯାଇଛି, ମୁହଁରେ ଯେ କଳା ଲଗିଛି, ସେଥିରେ ତାଙ୍କୁ କୋଇଲା କମ୍ପାନୀ କର୍ମଗୃଷ୍ଠ ବୋଲି ଚିହ୍ନିବାରେ କୌଣସି ଅସୁବିଧା ହେବନି ।

ମେନେଜର ମହାଶୟ ଗୃହଅଙ୍କୁ ଗୃହୁଁ ଚଟ୍‌ପଟେ ବସିପଡ଼ିଲେ । ତାପରେ କୋଟ ପକେଟରୁ ଦୁଇଟି ବିଭିନ୍ନ ରଙ୍ଗର ଚାରି ମୋଜା ବାହାର କରି ପିନ୍ଧିଲେ । ଛିଣ୍ଡା ଚଟି ଦିଟା ଦଉଡ଼ି ସାହାଯ୍ୟରେ ଗୋଡ଼ରେ ବାନ୍ଧିଲେ । ତାପରେ କୋଟ ବୋତାମ ଫିଟେଇ ଗୋଟିଏ ଛାଜ୍ ଘଣ୍ଟା ବାହାର କଲେ । ହଠାତ୍ ଚମକି ଉଠି ଘଣ୍ଟାଟାରେ ଗୃହ ଦେଇଁ ନେଇଁ ବିବ୍ରତ ହୋଇ ଆରମ୍ଭ କଲେ— ]



Digitized by srujanika@gmail.com

ମେନେଜର—ଏ, ଇନ୍ସପେକ୍ସନ୍ ଟାଇମ୍ ହୋଇଗଲା, ଇନ୍ସପେକ୍ସନ୍ ଟାଇମ ହୋଇଗଲା ! ଚତୁର, ଚତୁରାନନ—

[ କୋଇଲା କମ୍ପାନୀ ଚପରାଶି ଚତୁର ପ୍ରବେଶ କଲା, ବୟସ ୫୦ ଉପରେ । ମେନେଜରଙ୍କ ପୋଷାକ ସାଙ୍ଗେ ଖାପ ଖାଇଲା ଭଳି ତାର ବେଶଭୂଷା, ଖଣ୍ଡେ ଶସ୍ତା କୋଟ, ପିଠିପୂରା ଦେଖାଯାଉଛି, କାନ୍ଧରେ ଖଣ୍ଡେ ଝାଡ଼ଣ ପଡ଼ିଛି, ମୁହଁ, ଦେହ ସବୁ କଳା ]

ଚତୁର—ହଜୁର୍ !

ମେନେଜର—କିରେ, ବଡ଼ ବାବୁ କଣ ଏତେବେଳଯାଏ ଆସି ନାହାନ୍ତି ?

ଚତୁର—ନାହିଁ ତ ଆଜ୍ଞା !

ମେନେଜର—ନାହିଁ ତ ଆଜ୍ଞା ? ନାହିଁ ତ ଆଜ୍ଞା ? ଗଲା, ସବୁ ଗଲା । ମୋ ମେନେଜର ଚାକିରୀ ଗଲା, ତୁମ ଚାକିରୀ ବି ଯିବ ।

ଚତୁର—କାହିଁକି ଆଜ୍ଞା ?

ମେନେଜର—ଆଜି ପରା ଆମ ବିଶାଳ କୋଇଲା କମ୍ପାନୀର ସାତ-ଚାଳିଶିଆ ପ୍ରୋପ୍ରାଇଟର ସାହେବ ଅଫିସ ଇନ୍ସପେକ୍ସନକୁ ଆସିବେ । ସେଥିପାଇଁ ଜଲଦ୍ ଆସିବାକୁ କୁହା ହୋଇଥିଲା ।

ଚତୁର—ବଡ଼ ବାବୁ ଆସୁଥିବେ ଆଜ୍ଞା !

ମେନେଜର—ଆସୁଥିବେ ? ନା—କଣ କହୁଲୁ ? ବଡ଼ ବାବୁ ତୋର ଆ-ସୁ-ଥି-ବେ ! କୋଇଲା କମ୍ପାନୀ ଚାକିରୀ ତାଙ୍କୁ ଚାହିଁ ଥିବ ପରା, ଇନ୍ସପେକ୍ସନ ଟାଇମ୍ ଆଉ ଦୁ ମିନିଟ୍ ୩୭ ସେକେଣ୍ଡ ବାକି ରହିଲା, ବଡ଼ ବାବୁ ଯାଙ୍କର ଆ-ସୁ-ଥି-ବେ ।

Digitized by srujanika@gmail.com

ଚତୁର—ହେଉଛି ତ ଆସିଗଲେଣି ଆଜ୍ଞା !

ମେନେଜର—କଓଁ ବାରବର, ଏ କଣ ? ତୁମେ ସେ ଫିଫଥ ହାଣ୍ଡ୍ ସାଇକେଲଟାକୁ ସ୍ୱଦେହରେ ଧାରଣ କରି କାହିଁ ମାଡି ଆସିଲ ?

[ ବଡ଼ ବାବୁ ପ୍ରବେଶ କଲେ । ବୟସ ୪୦ ପାଖାପାଖି । ବଡ଼ ଦୁଃସ୍ଥ, ନୀରସ ଚେହେରା । ପୋଷାକପରିଚ୍ଛଦ ଭିତରେ ଖଣ୍ଡେ ଚିରା ଲୁଗା, ଚିରା କାମିଜ । ଗୋଡ଼ ଖଣ୍ଡିଆ ହୋଇ ଦୁଇ ଚାରି ଜାଗାରୁ ରକ୍ତ ବୋହୁଛି । ଅତି ପୁରୁଣା ସାଇକଲଟିଏ ବାହେଇଛନ୍ତି । ସାଇକଲଟିର ଅବସ୍ଥା ଅତି କଦର୍ଯ୍ୟ—ଟିଉବ୍ ସିଟ୍ ସବୁ ଫଟିଯାଇ ]

ବଡ଼ ବାବୁ—ଆଜ୍ଞା, ବାଟରେ ଆକ୍ସିଡେଣ୍ଟ ହୋଇଗଲା—

ମେନେଜର—ଆକ୍ସିଡେଣ୍ଟ ହେଲା ବୋଲି ଏ ସାଇକେଲଟାକୁ—

ବଡ଼ ବାବୁ—ବହୁତ ଚେଷ୍ଟା କରି ସଜଡ଼ାସଜଡ଼ି କଲି, କିନ୍ତୁ ଶେଷରେ ଯୁ ନ ଗୁଳିଲି କାନ୍ଧରେ ପକେଇ—

ମେନେଜର—ଘିନି ଆସିଲ ? ଭଲ କଲ ଗୁଣମଣି, ଭଲ କଲ— ଏକଦମ୍ କାନ୍ଧରେ ପକେଇ ଘିନି ଆସିଲ । ( ସ୍ୱର ବଦଳାଇ ) ବଡ଼ବାବୁ—

ବଡ଼ ବାବୁ—ଆଜ୍ଞା !

ମେନେଜର—ମୁଁ କହୁଚି, ତୁମେ ଏ ସାଇକଲ ମ୍ୟୁଜିୟମକୁ ପଠେଇଦିଅ ।

ବଡ଼ ବାବୁ—ଏକଦମ୍ ମ୍ୟୁଜିୟମ୍କୁ ଆଜ୍ଞା ?

ମେନେଜର—ହଁ ହଁ, ଏକଦମ୍ ମ୍ୟୁଜିୟମ୍କୁ । ଉଠାଅ, ମୁଁ କହୁଚି ଉଠାଅ, ଜଲଦି ଉଠାଅ ।

Digitized by srujanika@gmail.com

ବଡ଼ ବାବୁ—ଆଜ୍ଞା—

ମେନେଜର—କର୍ତ୍ତ ଉଠାଅ, ଯୀକୁ ନେଇ ଅଗ ବାହାରେ ଫୋପାଡ଼, ଭାପରେ କଥାବାର୍ତ୍ତ—

ବଡ଼ ବାବୁ—ବାହାରେ ପଡ଼ିଲେ ଚୋର ନେଇଯିବ ।

ମେନେଜର—ହୁଁ-ହୁଁ, ଚୋର ନେଇଯିବ ! ଚୋରର ଆଉ କାମ ନାହିଁ, ସେ ଏଇଅକୁ ନେଇ ଛଟପଟ ହବ ?

ବଡ଼ ବାବୁ—ଅଜ୍ଞା, ଅଫିସ ଫିବା ଅଦିବାରେ ବଡ଼ ସାହାଯ୍ୟ କରୁଚ, ଠିକେ ଏଇଠି ଥାଉ ।

ମେନେଜର—ଏଁ, ଏଇଠି ଥିବ ? ତୁମେ ମୋ କୋଇଲା କମ୍ପାନୀ ମେନେଜର ଗୃହକାର୍ଯ୍ୟଟା ଚହ୍ଦରେ ନେଇଯିବ ନା କଣ ?

ବଡ଼ ବାବୁ—କାହିଁକି ଆଜ୍ଞା ?

ମେନେଜର—କର୍ତ୍ତ, ଅମ ବିଶାଳ କୋଇଲା କମ୍ପାନୀର ସାଢ଼େ-ତିନିଅଣିଆ ପ୍ରୋପ୍ରାଇଟର ସାହେବ ଇଲେ ଇନ୍ସପେକ୍ସନକୁ ଆସିବେ ପରା ! ହ୍ୱା ଠିକ୍ ହାତୀରଟରେ ଏଠେ ପଡ଼ି, ପୁଣି ସାଇକଲ ଗୋଟାଯାକ ଦାନ୍ତ ବାହା ହୋଇଚ । ହ୍ୱାକୁ ଦେଖିଲେ ସେ ମତେ ମେନେଜର ଗୃହକାର୍ଯ୍ୟରେ ଅଉ ରଖିବେ ଟିକି ?

ବଡ଼ ବାବୁ—ଠିକେ ଚଳେଇଦିଅନ୍ତୁ ଅଜ୍ଞା !

ମେନେଜର—ଚଳେଇଦେବ ? ଚଳେଇ ଚଳେଇ ତ ଗୃହକାର୍ଯ୍ୟ ଖଣ୍ଡିକ ଚଳେଇଦବା ଉପରେ ବସିଲିଣି । ଚତୁର୍ବ—ଚତୁର୍ଭାନନ୍ଦ—

ଚତୁର୍ବ—ହଜୁର୍ !

ମେନେଜର—ଅରେ, ବୋକାଟା ପଦ୍ମ ଗୃହଁଚୁ କଣ ବା ? ଘୋଡ଼ା—

ଚତୁର୍ବ—ଘୋଡ଼ା ଅଜ୍ଞା ?

ମେନେଜର—ଅରେ ଘୋଡ଼ା—

Digitized by srujanika@gmail.com

ଚତୁର—ଘୋଡ଼ା ? କୋଇଲା କମ୍ପାନୀରେ ଘୋଡ଼ା କୁଠୁ ପାଇବ ଆଜ୍ଞା ?

ମେନେଜର—ଆରେ ବୋକାରାମ ଗିରିଧାରୀ, ଏଇଟା ଘୋଡ଼ା, ଗୃହଚୋଢ଼ଆ ଘୋଡ଼ା ନୁହେଁ, ସାଇକେଲକୁ କାଗଜରେ ଘୋଡ଼ା।

ଚତୁର—ହେଁ-ହେଁ, ଏଇ କଥା ଆପଣ କହୁଚ, ମୁଁ ଠିକେ ସମୁଝି ପାରିଲିନି ।

[ଚତୁର ସାଇକେଲ ଉପରେ କାଗଜ ଘୋଡ଼େଇଲା ।
ବଡ଼ ବାବୁ ଟେବୁଲରେ ବସି କାମରେ ମନ ଦେଲେ ]

ମେନେଜର—ଅରେ, ମୋ ବୁଦ୍ଧି ଯୋଗେ ଏ ଅନୁଷ୍ଠାନଟା ଚଳୁଚି; ନଇଲେ—

ଚତୁର—( କାଗଜ ଘୋଡ଼ଉ ଘୋଡ଼ଉ ) ନଇଲେ ଅଜ୍ଞା, ଅମେ ରସାତଳକୁ ଯାଆନ୍ତୁଣି । ସତେ ଆଜ୍ଞା, ଆପଣଙ୍କର ଯୁଁ ପୋଖତ ବୁଦ୍ଧି ନା—

ମେନେଜର—ସିମିତ ପୋଖତ ବୁଦ୍ଧି ନ ଥିଲେ, ମୁଁ ଏ କୋଇଲା କମ୍ପାନୀ ପରି ଗୋଟେ ବିଶାଳ ଅନୁଷ୍ଠାନ ଦେଶରେ ଠିଆ କରି ପାରିଥାନ୍ତି ? ବୁଝିଲୁ, ଚତୁରାନନ୍ଦ ! ତୃତୀୟ ଶ୍ରେଣୀରେ ତିନି ଥର ଫେଲ୍ ହେଇ ଯୁଦିନ ପାଠଟାକୁ ଗୁଡ଼ବାଇ କରିଦେଲି ନା, ସେଇ ଦିନୁଁ ବୁଦ୍ଧି-ଗଛଟାକୁ ମୁଁ ଏ ଦିହରେ ଲଗେଇଦେଇଚି । ଇଲେ ତ ସେ ଖାଲି ଫଳ ଫଳୁଚି !

ଚତୁର—ହେଁ-ହେଁ-ହେଁ, ସତେ ଅଜ୍ଞା ?

ମେନେଜର—ସତେ ନୁହେଁ, ଅଉ ମିଚ୍ଛେ ! ଏ ଜୁ ଜନିଯୁସ୍, ତାକୁ ଚହ୍ନିବାକୁ ଏ ଦେଶୀ ଦେଶରେ କେହି ନାହିଁ । ବିଲାତ

Digitized by srujanika@gmail.com

ଦେଶ ହୋଇଥିଲେ କୁ ଦନୁ ମୁଁ ଗୋଟେ ଇକ୍ନୋମିଅ ଜସ୍କ ନୋବେଲ ପ୍ରାଇଜ ପାଇପାରନ୍ତିଣି ।

ଚତୁର—ହଁ, ତା ନୁହେଁ ଆଉ କଣ ? ( ମେନେଜରର ପାଖକୁ ଯାଇ ) ଦୋହଡ଼େଇଦେଲି ଆଜ୍ଞା !

ମେନେଜର—ବେଶ୍, ବେଶ୍ ! ଅଚ୍ଛା, ଚତୁର, ତୁ ଏ ଘରଟା ଟିକେ ସଫା କରିଦେ—ଆଉ ବଡ଼ ବାବୁ, ତୁମେ ସେ ବାର୍ଷିକ ରିପୋର୍ଟ, ଇନ୍‌କମ୍ ଟାକ୍ସ ରିଟର୍ଣ୍ଣ, କୋଇଲା କମ୍ପାନୀ ମାସିକ ବିବରଣୀ, ସବୁ ଠିକ୍‌ଠାକ୍ କରିଦିଅ । ଇଲେ ସାହେବ ସବୁ ଦେଖିବେ—

ବଡ଼ ବାବୁ—( ଚିନ୍ତା ହୋଇ ) ଆଜ୍ଞା, ଏତେ ?

ମେନେଜର—କେତେ ? ନା କେତେ ? କୋଇଲା କମ୍ପାନୀ ଚୁକ୍ତି ଖସ୍ତା ବୋଲି ଭାବିଚ ପରା ? ବୁଝିଲ ଗୁଣମଣି, ଯଦି ଚୁକ୍ତିକି ଲୋଭ ଅଛି, ସେତକ ଜଲଦି ଠିକ୍ କରିଦିଅ, ନଚେତ୍ ପଛରେ ପସ୍ତେଇଥିବ ।

ବଡ଼ ବାବୁ—ହଉ ଆଜ୍ଞା, ଚେଷ୍ଟା କରୁଚି, କଣ କରିବ, କୋଇଲା କମ୍ପାନୀ ଚୁକ୍ତି ତ କରିଚ !

ମେନେଜର—ହଁ, ଜଲଦି କରିଦିଅ । ଚତୁର—ଚତୁରାନନ୍ଦ !

ଚତୁର—ହଜୁର୍ !

ମେନେଜର—କିରେ ଚତୁର ! ହଜୁର କଣ ? ସାର୍ କହ, ସାର୍ । ଏତେ ବଡ଼ କୋଇଲା କମ୍ପାନୀର ଚପରାଶି ହୋଇ ଆଜିଯାଏ ତୁ ସାର୍ କହି ଶିଖିନୁ ? ଚତୁର—ଚତୁରାନନ୍ଦ ?

ଚତୁର—ସା-ଅ-ର୍ !

Digitized by srujanika@gmail.com

ମେନେଜର—( ଚତୁରଙ୍କୁ କୁଣ୍ଢେଇ ପକେଇ ) ସାବାସ ; ( ବୃଢ଼ପଣ ଗମ୍ଭୀର କଣ୍ଠରେ ଆରମ୍ଭ କଲେ ) ଅଚ୍ଛା ଚତୁର, ବଡ଼ ବାବୁ !

ଚତୁର ଓ ବଡ଼ବାବୁ—ଅଜ୍ଞା !

ମେନେଜର—ସାହେବ ଯିମିତି ଆସିବେ ନା ମୁଁ ସିମିତ ହୁଇସିଲ ଦେବ, ଆଉ ତୁମେ ସାଙ୍ଗେ ସାଙ୍ଗେ ଆଟେନ୍‌ସନ୍ ଅବସ୍ଥାରେ ଠିଆ ହେଇଯିବ । ଅଚ୍ଛା ଚତୁର, ଆଟେନ୍‌ସନ୍ ଠିଆ କମିତ ହୁନ୍ତି ଜାଣିଚୁ ନା ?

ଚତୁର—ନାହିଁ ଅଜ୍ଞା, ଶିଖେଇଦିଅନ୍ତୁ ।

ମେନେଜର—ଶିଖେଇଦେବ ? ତୁମେ ବଡ଼ ବାବୁଠୁ ଚଉଦ୍ଦିଗେ ଦରମା ବୋଧ୍ହ ନଉଥିବ, ଆଉ ମୁଁ ଖାଲି ଶିଖେଇଦଉଥିବ, ଚଲେଇଦଉଥିବ ।

ଚତୁର—ଅ-ଜ୍ଞା !

ମେନେଜର—ଆରେ ରଖ ସେ ସବୁ ଆଜ୍ଞା, କୋଇଲା କମ୍ପାନୀ ମେନେଜର ତା ଜୀବନରେ କେତେ ଅଜ୍ଞା ଶୁଣିଚି । କାମ ଆରମ୍ଭ କର । ଗୋଡ଼ ସଳଖ କର, ଗୋଡ଼ ସଳଖ କର ।

[ ଚତୁର ଥରମର ହେଇ ଆଟେନ୍‌ସନ୍ ଅବସ୍ଥାରେ ଠିଆ ହେବାକୁ ଚେଷ୍ଟା କଲା ବଡ଼ବାବୁ ଚତୁରଙ୍କୁ ଅଣ୍ଟୁଆ ଦେଇ ସଳଖ ଭାବରେ ଠିଆ ହେବାକୁ ବତାଇଲେ ]

ଚତୁର—କାହିଁକି ଅଜ୍ଞା, ସେମିତ ଅଣ୍ଟୁଆ ମାରୁଚନ୍ତି, ଗୋଡ଼ଟାରେ ଗୋଟେ କଣ୍ଟା ନାଁ ହେଇଚି ଯେ—

Digitized by srujanika@gmail.com

ମେନେଜର—ରଖ ତୋ କଣନଶା ? କୋଇଲା କମ୍ପାନୀ ଗୃହକସ ଏତେ ସହଜ ବୋଲି ଭାବନ୍ତୁ ପରା ! କର୍, ମୁଁ ଯିମିତ କହୁଚି !

[ ଚତୁରର ଗୋଡ଼ ହାତ ସଜାଡ଼ି ଦେଲେ ]

( ବଡ଼ ବାବୁଙ୍କୁ ଚାହିଁ ) ଅଚ୍ଛା, ବଡ଼ ବାବୁ, ସାହେବ ଆଜି ଇନ୍‌ସପେକ୍‌ସନ୍‌କୁ ଆସିବେ । ତୁମେ ଟିକେ ଭଲ ଭାବରେ ତେଲ ଲଗେଇ, ଚିକ୍‌କଣ କରି ମୁଣ୍ଡ କୁଣ୍ଡେଇ ଆଇଲ ନା ! ଅନ୍ତତଃ ଖଣ୍ଡେ ଭଲ ଡ୍ରେସ୍ ପିନ୍ଧ—

ବଡ଼ ବାବୁ—ଭଲ ଡ୍ରେସ୍‌ଟେ ପାଇବି କୁଠୁ ଆଜ୍ଞା ? ଦରମା ତ ବାଣ୍ଠା ଜୋତା ଦାମ ପରି ଏକୋଇଶ ଟଙ୍କା ପନ୍ଦର ଅଣା—

ମେନେଜର—ଏକୋଇଶ ଟଙ୍କା ପନ୍ଦର ଅଣା ?

ବଡ଼ ବାବୁ—ହିଁ ଆଜ୍ଞା, ବାଇଶ ଟଙ୍କା ଦରମାରୁ ଅଣେ ରେଭେନ୍ୟୁ ଷ୍ଟାମ୍ପ ଯାଉଚି ।

ମେନେଜର—ଓ, ଏଇଥିପେଇଁ ତୁମେ ଚିରା ଲୁଗାଟେ ପିନ୍ଧି ବାହାରି ଅଇଲ, ନା ? ସେ ବାଜେ କଥା ଛାଡ଼ । ସାବଧାନ ହେଇ ଠିଆ ହବ, ଯିମିତ ଚିରା ଆଗକୁ ନ ପଡ଼େ, ବୁଝିଲ ? (ଟିକେ ହସି) ହେଁ-ହେଁ, ଏ ପାଖରେ ପଡ଼ଚି କ ବାପ, କୋଇଲା କମ୍ପାନୀ ବଡ଼ ବାବୁ ଟି ! ( ସ୍ୱର ବଦଳାଇ ) ଚତୁର—ଚତୁରାନନ୍ଦ ?

ଚତୁର—( କାନରେ ହାତ ଦେଇ ) କେଡ଼େହେଁ ଡାକୁଚନ୍ତି ଆଜ୍ଞା ! କାନ ତାଟବଦା ହେଇଯାଉଚି—ମୁଁ ଏଇଠି ଅଛି ପରା !

ମେନେଜର—ଏଇଠି ଥିଲେ ସିଥିରୁ ଢଣ ହେଇଗଲା ? ବିଶାଳ କୋଇଲା କମ୍ପାନୀ ମେନେଜରଟି ମୁଁ ! ମେନେଜରମାନେ କିପରାଣିକୁ ଯେମିତ ଡାକନ୍ତି, ମୁଁ ସେମିତ ଡାକିବ ନା !

Digitized by srujanika@gmail.com

ଚତୁର—ହଉ, ତେବେ କଣ କହୁଚନ୍ତି, କହନ୍ତୁ ଆଜ୍ଞା !

ମେନେଜର—ଅଚ୍ଛା, ଚତୁର, ବଡ଼ବାବୁ !

ବଡ଼ବାବୁ<br>ଚତୁର } —(ବିସ୍ଫାରିତ ନେତ୍ରରେ) ଆଜ୍ଞା—

ମେନେଜର—ସାହେବ ଆଇଲେ ତୁମେସବୁ କିମିତ ଠିଆ ହବ, ଆଗ ସେଇଟାକୁ ପ୍ରାକ୍‌ଟିସ୍ କରିନିଅ। ମୁଁ ପ୍ରଥମେ 'ରେଡ଼ି' କହିବି ତାପରେ ଓ୍ୟାନ୍, ଟୁ, ଥ୍ରୀ କହି ହ୍ୱିସିଲ୍ ଦେବି । ହ୍ୱିସିଲ ଶବ୍ଦ ଶୁଣିଲାକ୍ଷଣି ତୁମେ ଅଟେନ୍‌ସନ୍ ଅବସ୍ଥାରେ ଠିଆ ହେଇଯିବ। ଆରମ୍ଭ କର ଓ୍ୟାନ୍, ଟୁ—

[ଚତୁର ହଠାତ୍ ତ୍ରିଭଙ୍ଗୀ ଠାଣିରେ ଠିଆ ହୋଇଗଲା]

ଆରେ ଥମ୍ଭ ଧର, ଥମ୍ଭ ଧର, ମୁଁ ଥ୍ରୀ କହିନି—

[ ମେନେଜର ଜାଗ୍ ଘଣ୍ଟୀକୁ ଓଠ ଭିତରେ ପୂରେଇ ହାତରେ ହ୍ୱିସିଲ ଧରିଲେ । ବଡ଼ବାବୁ ଓ ଚତୁର ସଶଙ୍କ ଅବସ୍ଥାରେ ଠିଆ ହେଲେ। ଚତୁର ଟଙ୍ଗ୍ ଟଙ୍ଗ ହେଉଥାଏ ]

ହାଁ, ହାଁ, ଚତୁରନନ୍ଦ—ଝୁଙ୍କିପଡୁଛ କିଆଁ, ହ୍ୱିସିଲ ବାଜିନି। ହଁ, ରେଡ଼ି—ଓ୍ୟାନ୍, ଟୁ, ଥ୍ରୀ—(ଚତୁର ବଙ୍କାହେଇ ଠିଆ ହେବାରୁ ତାକୁ ଧକ୍‌କା ଦେଇ ) ହେଲନି, ହେଲନି ଚତୁରନନ୍ଦ, ଗୋଡ଼ ସଳଖ କର ! ଗୋଡ଼ ସଳଖ କର !

ଚତୁର—ଓହୋ, କେତେହେଁ ଖୋଳ ଷଡ଼ଯନ୍ତ୍ର ଆଜ୍ଞା, ଅଣ୍ଟାଟା ଜଖମ ଅଛି ସବୁ !



Digitized by srujanika@gmail.com

ମେନେଜର—ସେ ଇଖମଫଖମ କଣ୍ଟା ଶୁଣ୍ଡା ଯିବନି। ହଁ, ଆଉ ଥରେ। ବଡ଼ବାବୁ, ଏ ଲଟଲ୍ ସ୍ମାଇଲ୍ ଫେଶ୍ ଫ୍ଲିକ୍, ହଁ ରେଡ଼—ୱାନ୍, ଟୁ, ଥ୍ରୀ—ହେଲନି ବଡ଼ବାବୁ, ହେଲନି। ଓହୋ, କେତେ ମୁଁ ବତେଇବ ! କଁଓ, ତୁମେ ସେମିତ ଅଷ୍ଟାବକ୍ର ଜିଷି ପରି ଠିଆ ହଉଚ କଣ ? ଆଉ ଥରେ, ହଁ, ରେଡ଼—ୱାନ୍, ଟୁ, ଥ୍ରୀ—କରେ ଚଳୁବ, ମୁଁ ତତେ ଅଟେନ୍‌ସନ୍ ଅବସ୍ଥାରେ ଠିଆ ହବାକୁ କହୁଛି, ଆଉ ତୁ ମହିଷାସୁରମର୍ଦ୍ଦିନୀ ବେଶରେ କଣ କଥା ହଉଛୁ ! ହଁ, ଆଉ ଥରେ, ଆରମ୍ଭ କର—ରେଡ଼ି, ୱାନ୍, ଟୁ, ଥ୍ରୀ; ଆଉ ଥରେ—ରେଡ଼ି, ୱାନ୍, ଟୁ, ଥ୍ରୀ; ରେଡ଼ି—ୱାନ୍, ଟୁ, ଥ୍ରୀ; ଆଉ ଥରେ—ରେଡ଼ି, ୱାନ୍, ଟୁ, ଥ୍ରୀ।

[ ଇମିତ ବ୍ୟାପାରଟା ଚାଲିଥାଏ । ହଠାତ୍ ପ୍ରୋପ୍ରାଇଟର ପୁତ୍ର ସାହେବୀ ବେଶରେ ତାଙ୍କ କୁକୁରକୁ ସାଙ୍ଗରେ ଧରି ପହଞ୍ଚିଗଲେ । ତାଙ୍କୁ ଦେଖି ସମସ୍ତେ ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲେ । ମେନେଜର କିନ୍ତୁ ଟେବୁଲ ଉପରେ ଉଠି ଠିଆ ହେଲେ

ପ୍ରୋପ୍ରାଇଟର—କଁଓ, କଣ ଏତେ ଠିଆ ହେଇ ପଡ଼ୁଚ ?

ମେନେଜର—ଆଜ୍ଞା, ଏ ପୋଷାକଟା ଟିକେ ମଇଳା ହେଇଗଲା କି ନା !

ପ୍ରୋପ୍ରାଇଟର—ପୋଷାକଟା ତ ଭାରି ସଫା ଥିଲା, ଆଉ ତଳେ ପଡ଼ିଯିବାକୁ ଟିକେ ମଇଳା ହେଇଗଲା ! ଅଚ୍ଛା, ଇମିତ ବସ୍ ଉଠ୍ ଚାଲିଚି କାହିଁକି ? ତୁମେ ଯାହାକୁ କମ୍ପ୍ଲିମେଣ୍ଟ୍ ବୋଲି ଭାବିଲ ନା। କଣ ?

ମେନେଜର—ଜାହିଁ ଅଜ୍ଞ !

Digitized by srujanika@gmail.com

ପ୍ରୋପ୍ରାଇଟର—କଣ ନାହିଁ ? କୋଇଲ ଦୋକାନ କାମ ଛାଡ଼ ସାତମାସ
ଏଠି ଗୋଟେ ଦନ୍ତବୈଠକ ପ୍ରାକ୍ଟିସ୍ ଆରମ୍ଭ କରିଦେଇଛ ।

ମେନେଜର—ନାହିଁ ଆଜ୍ଞା, ଆପଣ ଆସିବେ ବୋଲି—

ପ୍ରୋପ୍ରାଇଟର—ଆପଣ ଆସିବେ ବୋଲି ଏଠି ଥିଏଟର ଆରମ୍ଭ କରିଥିଲ, ନା ?

ମେନେଜର—ନାହିଁ ଆଜ୍ଞା, ଖାଲି ରିହରସାଲ୍—

ପ୍ରୋପ୍ରାଇଟର—କଣ ଡ୍ରେସ୍ ରିହରସାଲ୍ ?

ମେନେଜର—ନାହିଁ ଆଜ୍ଞା, ଏ ମାମୁଲି । ଆପଣ ଆସିଲେ କିଏ କିମିତି ରେସ୍ପେକ୍ଟ୍ ଦେଖେଇବେ, ସେଇଆ ରିହରସାଲ୍ କରୁଥିଲୁଁ—

ପ୍ରୋପ୍ରାଇଟର—କି ରିହରସାଲ୍ କରୁଥିଲ ? ମତେ ଦେଖି ତ ତୁମ କସରତୀବାବୁ ଏକଦମ୍ ଲିଲ୍ ଡାଉନ୍ ଅନ୍ ଦ ଗ୍ରାଉଣ୍ଡ ହୋଇ ପଡ଼ିଲେ—ଚତୁର ତ ଟେଲ୍‌ପଟାଙ୍ଗ୍—ତୁମେ ପୁରାପୁରି ମାଙ୍କଡ଼ଟେଲ୍ ମାଇଲ—

ମେନେଜର—(କୁକୁରକୁ ଆଉଁସି) ନାହିଁ ଆଜ୍ଞା, ମୁଁ ସବୁ ବତେଇଥିଲି, ଖାଲି ଆପଣଙ୍କ ଡରରେ, ଆପଣ ଠିକେ ଠିଆ ହୁଅନ୍ତୁ ନା, ମୁଁ ପୁଣି ଥରେ ଦେଖେଇଦଉଛି । ଆଜ୍ଞା, ଏ ଇମିତିସିମିତି ଶିକ୍ଷା ନୁହେଁ, କୋଇଲ କମ୍ପାନୀ ଟ୍ରେନିଂ ଟି ? କଣ ଆଉ ଥରେ ଦେଖେଇବି ଆଜ୍ଞା ?

ପ୍ରୋପ୍ରାଇଟର—ନାହିଁ ଥାଉ, ଆଉ ଦେଖେଇବା ଦରକାର ନାହିଁ । ଥରେ ତ ଯାହା ଦେଖେଇଲ ଆମେ ସେଥିରେ କୃତାର୍ଥ, ଆଉ ପୁଣି କାହିଁକି ?

[ ପ୍ରୋପ୍ରାଇଟର କୁକୁର ଝିଞ୍ଜିରଟାକୁ ମେନେଜରଙ୍କ ହାତକୁ ପକେଇଦେଲେ । ମେନେଜର ଉତ୍ସାହ ତାକୁ ନେଇ ଟେବୁଲ ଗୋଡ଼ରେ ବାନ୍ଧିଲେ ।]

ଅଚ୍ଛା, କାଗଜପତ୍ରସବୁ ଠିକ୍ ହୋଇଛି ନା ?

Digitized by srujanika@gmail.com

ମେନେଜର—ହଁ ଆଜ୍ଞା, ସବୁ ଠିକ୍—ଆଜ୍ଞା ବଡ଼ବାବୁ, ଆଜ୍ଞା ।

ପ୍ରୋପ୍ରାଇଟର—ବଡ଼ବାବୁ ?

ମେନେଜର—ଆଜ୍ଞା, ସେ ଆମ ହେଡ୍ ଆସିଷ୍ଟାଣ୍ଟ୍ କି ନା ? ହେଡ୍ ଆସିଷ୍ଟାଣ୍ଟ୍‌କୁ ବଡ଼ ବଡ଼ ଫାର୍ମରେ, ସରକାରୀ ଅଫିସରେ ବଡ଼ବାବୁ ବୋଲି ଡାକନ୍ତି । ମୁଁ ସାଇକଲ୍ ଏମ୍ପୋରିଅମ୍, କାଠ ଗୋଦାମରେ ଦେଖି ଆସିଛି, ଆଜ୍ଞା !

ପ୍ରୋପ୍ରାଇଟର—ଭଲ ଦେଖିଛ, ଗୋଟିଏ କିରାଣୀ, ତାକୁ ପୁଣି କୁହାଯାଉଛି ହେଡ୍ ଆସିଷ୍ଟାଣ୍ଟ୍ । ପୁଣି ତାର ଓଡ଼ିଆ ତର୍ଜମା ହେଲା ବଡ଼ବାବୁ, ନା ? ଆଉ ତୁମେ ?

ମେନେଜର—ମୁଁ ତ ସ୍ୱୟଂ ମେନେଜର ଆଜ୍ଞା !

ପ୍ରୋପ୍ରାଇଟର—ହେଁ, ହେଁ ( ହସି ) କହୁଛ କଣ ହେ, ହେଡ୍ ଆସିଷ୍ଟାଣ୍ଟ୍, ମେନେଜର—ଏ ଆମ କୋଇଲା ଦୋକାନରେ ?

ମେନେଜର—ହଁ, ଆଜ୍ଞା, ଆମର ଏଡ଼େ ବଡ଼ କୋଇଲା କମ୍ପାନୀ—

ପ୍ରୋପ୍ରାଇଟର—( କଥାବଦଳାଇ ) ଆଉ ଇଏ ?

ମେନେଜର—ଏ ଚପରାଶି ଆଜ୍ଞା !

ପ୍ରୋପ୍ରାଇଟର—ଚପରାଶି ! ବେଶ୍, ବେଶ୍, ଭଲ କରିଛ । ଆଉ ଲୋକେ କୋଇଲା ମାଗିଲା ବେଳେ କିଏ ଉଠାଉଛି କହ-ହେଉଛି ?

ମେନେଜର—ଆଜ୍ଞା, ସେସବୁ ସୁପ୍ରଭୁରୁପ କରୁଦଉନ୍ତି । ଆମକୁ ସୁବିଧା ହଉଛି, ସେଥିରେ ଅବହେଳା କରିବୁ ଆଜ୍ଞା ? ଦେଖୁ ନାହାନ୍ତି ଟେବୁଲରୁ ! ହେଲେ ଅଫିସ ଆଦବକାଇଦାଟା ଠିକ୍ ରଖିଲୁ ।

Digitized by srujanika@gmail.com

ପ୍ରୋପ୍ରାଇଟର—ବାଃ-ବାଃ, ଚମତ୍କାର ବୁଦ୍ଧି ! ତା ନ ହେଲେ ମେନେଜର ! ଆଉ ଏଗୁଡ଼ାକ ଏତେ ଅପରିଷ୍କାର କରିଚ କାହିଁକି ?

[ପ୍ରୋପ୍ରାଇଟର ସାଇକଲ୍ ଉପରେ ଥିବା କାଗଜକୁ କାଢ଼ିଲେ]

ଏଁ, ଏଗୁଡ଼ାକ କଣ ?

[ ଅନ୍ୟ ସମସ୍ତେ ବରଡ଼ାପତ୍ର ପରି ଥରିଲେ ]

ମେନେଜର—ସେଇଟା ବଡ଼ବାବୁଙ୍କର ଆଜ୍ଞା—

ପ୍ରୋପ୍ରାଇଟର—( କିରାଣୀକୁ ନିରେଖି ଚାହିଁ ) ଏଇ ଲୋକଟା ତୁମ ବଡ଼ବାବୁ ? ଯାକୁ ତ ମୁଁ ରାସ୍ତାରେ ଦେଖିଥିଲି ସାଇକଲରେ ଦଉଡ଼ ବନ୍ଧାବନ୍ଧ କରୁଥିଲା । କିଓ, ତୁମେ ଏଗାରଟା ବେଳକୁ ଅଫିସକୁ ଆସୁଚ ? ଠୁ ରୁପିଜ୍ ଫାଇନ୍, ଠୁ ରୁପିଜ୍ !

ମେନେଜର—ଆଜ୍ଞା, ଏ ମାସର ନ ଜମା ତିନି ତାରିଖ ହେଲା । ତାଙ୍କ ଉପରେ ତେର ଟଙ୍କା ଫାଇନ୍ ହେଲାଣି ।

ପ୍ରୋପ୍ରାଇଟର—ହେଲେ କଣ ହେଲା ?

ମେନେଜର—ଆଜ୍ଞା, ତାଙ୍କ ଦରମା ତ ମୋଟେ ବାଇଶ ଟଙ୍କା । ମୁଁ ଆଦାୟ କରିବି କିମିତି ?

ପ୍ରୋପ୍ରାଇଟର—କିମିତି ଆଦାୟ କରିବ ? ଦରମାରୁ ତ କଟିବ, ତୁମର ଆଉ ଅସୁବିଧା ହଉଚି କଣ ?

[ହଠାତ୍ ଆଲର୍ମ ଘଣ୍ଟାର ଶବ୍ଦ ମେନେଜରଙ୍କ ବାକ୍ସ ଭିତରୁ ଭାସି ଆସିଲା । ମେନେଜର ପ୍ରୋପ୍ରାଇଟରଙ୍କୁ ଦେଖି ଏତେ ଡର ଯାଇଥିଲେ ଯେ ସେ ସହଜରେ ଏ ଶବ୍ଦ କୁଆଡୁ ଆସୁଚି ଜାଣିପାରିଲେନି । ଦେହର ଏଣେତେଣେ ଦେଖନ୍ତି ଶେଷରେ ଜାଇ ଘଣ୍ଟାକୁ ବାହାର କରି ହସହସ ମୁହଁରେ ଚଳାର କରି କହିଲେ । ]

Digitized by srujanika@gmail.com

ମେନେଜର—ବାଜିଲା ଅଜ୍ଞା, କୋଇଲା କମ୍ପାନୀର ଆଲାର୍ମ ଘଣ୍ଟା ବାଜିଲା । ( ପ୍ରୋପ୍ରାଇଟରଙ୍କ ପାଖକୁ ଯାଇ ମୁଲ୍‌ଏମ କଣ୍ଠରେ ) ଅଜ୍ଞା, ଏ ମୋଟେ ତିନି ମିନିଟ ଲେଟ୍ ଅଜ୍ଞା !

ପ୍ରୋପ୍ରାଇଟର—କର୍ତ୍ତ, ସେ ଲାଇଟ୍ ଘଣ୍ଟାଟା କାହିଁକି ପକେଟରେ ପୂରେଇଥିଲ ?

ମେନେଜର—ଅଜ୍ଞା, କାଳେ ଆପଣଙ୍କ ଆସିବାବେଳ ଜାଣିପାରିବନି ବୋଲି ଆଲାର୍ମ ଦେଇଥିଲି ଯେ, ସେ ଏତେବେଳକୁ ବାଜୁଚି । ଆଜିକାଲି ଏ ଘଣ୍ଟା କମ୍ପାନୀଗୁଡ଼ାକ ସୁଦ୍ଧା ଠକ ହେଲେଣି ! ଆପଣ ଯାହା ଢହନ୍ତୁ ଅଜ୍ଞା, ସେଠାଟଣିଆରେ ଆମ କୋଇଲା କମ୍ପାନୀକୁ ଦେଖୁ ଲଗନ୍ତିନି ।

ପ୍ରୋପ୍ରାଇଟର—ତେବେଳେ ତୁମେ ସେ ଘଣ୍ଟାକୁ ବେକରେ ଝୁଲେଇଚ କାହିଁକି ?

ମେନେଜର—ଅନ୍ୟ କୁଆଡ଼ି ଥିଲେ ଶୁଭିବ କି ନାହିଁ ବୋଲି ପାଖେ ପାଖେ ରଖିଚି ଅଜ୍ଞା । ( ଘଣ୍ଟା ମୋଡ଼ିଲେ )

ପ୍ରୋପ୍ରାଇଟର—ପୁଣି ସେଇଟା ମୋଡ଼ୁଚ କାହିଁକି ?

ମେନେଜର—ଅଜ୍ଞା, ଏଇଟା କୋଇଲା କମ୍ପାନୀ ଘଣ୍ଟା ଟି ? ଏ କଣ ସିମିତ ଚାଲିବ ?

ପ୍ରୋପ୍ରାଇଟର—ନାହିଁ, ସବୁବେଳେ ମୋଡ଼ିଲେ ଯାଇ ଚାଲିବ !

ମେନେଜର—ହଁ ଅଜ୍ଞା, ସେମିତି ମୋଡ଼ି ମୋଡ଼ି କରି ଚଲେଇବାକୁ ପଡୁଚି ନା ! ଦେଖୁ ନାହାନ୍ତି ଇଥିରେ କଣ ଅଛି—ନା ଘଣ୍ଟାକଣ୍ଟା ନା ମିନିଟ୍‌କଣ୍ଟା, ନା ମେନ୍ ସ୍ପ୍ରିଙ୍ଗ୍ ନା ହେୟାର୍ ସ୍ପ୍ରିଙ୍ଗ୍—

ପ୍ରୋପ୍ରାଇଟର—ପୁଣି ସମୟ ଜାଣୁଚ କିମିତି ?

Digitized by srujanika@gmail.com

ମେନେଜର—ଅନ୍ଦାଜ କରି ଆଜ୍ଞା !

ପ୍ରୋପ୍ରାଇଟର—ସମସ୍ତ ତ ଅନ୍ଦାଜ କରି ଜାଣନ୍ତି, ଆଉ ଏଇଟାକୁ କାହିଁ ରଖିଚ ?

ମେନେଜର—ସମସ୍ତ ଜାଣିବା ଆଉ ଘଣ୍ଟା ରଖିବା ଏ ଦୁଇଟା ପୂରା ଅଲଗା କଥା ଆଜ୍ଞା !

ପ୍ରୋପ୍ରାଇଟର—ହୁଁ-ହୁଁ ! ସେମିତ ବାଜେ କଥା ସବୁ ତୁମର ପାଖରେ ।

[ ପ୍ରୋପ୍ରାଇଟର ଚଉକିରେ ବସିବା ବେଳକୁ ଚଉକି ଭାଙ୍ଗିଗଲା, ପ୍ରୋପ୍ରାଇଟର ପଡ଼ିଗଲେ । ]

ମେନେଜର—ଓହୋ—ହୋ, ଆସ୍ତେ ବସିଲେନି ଆଜ୍ଞା, କେଡ଼େବେଗେ ପଡ଼ିଗଲେ—

ପ୍ରୋପ୍ରାଇଟର—ଏ କି ଚଉକି ରଖିଚ ?

ମେନେଜର—ଆଜ୍ଞା, ପଇସା ଅଭାବରୁ କବାସନି ପଟାରେ ଖଣ୍ଡେ କରେଇ ଦେଇଥିଲି । ଆପଣ ଟିକେ ସାବଧାନ ହୋଇ ବସୁନାହାନ୍ତି ! ଗଲା, କମ୍ପାନୀ ଚଉକିଟା ଅକାରଣ ଗଲା !

ପ୍ରୋପ୍ରାଇଟର—ମୁଁ ପଡ଼ି ହାତଗୋଡ଼ ଖଣ୍ଡିଆ ହେଲିଣି । ଆଉ ଏ କବାସିନିପଟା ଚଉକିଟା ଭାଙ୍ଗିଯିବାରୁ ତୁମକୁ ଏତେ ବାଧୁଚି ! ଏମିତି ଚଉକିସବୁ କାହିଁକି ତିଆରି କରିଚ ?

ମେନେଜର—ଆଜ୍ଞା, ସେ କଣ ବସିବାକୁ ହୋଇଥିଲା, ଦେଖେଇବାକୁ ହୋଇଥିଲା ନା ! ଏତେ ବଡ଼ କୋଇଲା କମ୍ପାନୀ, ଗୋଟେ ଚଉକି ତ ରଖିବା ଦରକାର । ତେଣୁ ଏ ପାକିଙ୍ଗ୍ ପଟାରେ ଖଣ୍ଡେ କରି ଦେଇଥିଲି ନା !

Digitized by srujanika@gmail.com

ପ୍ରୋପ୍ରାଇଟର—ଭଲ କରିଥିଲ, ଭଲ କରିଥିଲ—ତୁମର ଯୁଁ ପୋଖତ ବୁଦ୍ଧି ନା ! ତେବେ ଯାକୁ କୋଇଲା କମ୍ପାନୀ ନାଁ ନ ଦେଇ ନରହତ୍ୟା-ନାଳୟ ନାଁ ଦେଲନି ?

ମେନେଜର—ନାଁ ଦେବୁ କଣ ଅଜ୍ଞା ? ଠିକେ କଥାଟା ତଳେଇ ଭାବିଲେ ଏ ଜାଗାଟା ସେଇଆ ନୁହେଁ ତ—

ପ୍ରୋପ୍ରାଇଟର—ଚୁପ୍ କର, ଖାଲି ଲମ୍ବା ଲମ୍ବା ବକ୍ତୃତା ! ଅଚ୍ଛା, ଏ ଯେ ଟଙ୍କାସବୁ ଅଦାୟ ହଉଚି, ସେ କୁଆଡ଼େ ଯାଉଚି ?

ମେନେଜର—ଅଜ୍ଞା, କମ୍ପାନୀର ଯେତେ ଅଦାୟ ଯେ, ଯାହା ଯେଉଁ ଅଇଲା ସେ ଅପଣଙ୍କ ଗସ୍ତ ଖର୍ଚ୍ଚକୁ ନିଅଣ୍ଟ । ଆମ ଦରମା ତ ଖାଲି ବାକିରେ ଗୁଳୁଚି ।

ପ୍ରୋପ୍ରାଇଟର—ଉଃ, କଣ ଯେ ତୁମେ ବକ ! ମୋ ମୁଣ୍ଡ ଖରାପ ହେଇ-ଯାଉଚି ଏ କଥା ଶୁଣି । ହଉ, କାଗଜପତ୍ର ଆଣ ।

ମେନେଜର—କିଓ ବଡ଼ବାବୁ, ଅଣ । ମୁଁ ତୁମକୁ ଆଗରୁ କହି-ଦେଇଚି ଯାହାବ କାଗଜ ମାଗିବେ ବୋଲି । ଜଲଦି ଅଣ—କିଓ, ଜଲଦି ଆଣ ।

ପ୍ରୋପ୍ରାଇଟର—କିଓ, ଆଣ ।

ମେନେଜର—କିଓ, ଅଣ ।

ପ୍ରୋପ୍ରାଇଟର—ଏ କଣ ଜବାବ କିଛି ଦଉନି । ଏଇଟା କଣ କୋଇଲା କମ୍ପାନୀ ଅଫିସ ନାଁ ମୂକ ବଧିର ଗ୍ୟାରେଜ୍ ? କିଓ, ଅଣ—

ମେନେଜର—କିଓ ବଡ଼ବାବୁ, ଅଣ କାଗଜପତ୍ର ।

ବଡ଼ବାବୁ—( ବଡ଼ ସଂକ୍ରସ୍ତଭାବରେ ଠିଆ ହେଇ ) ନାଇଁ ଅଜ୍ଞା, ସେ ହେଇପାରିବନି ।

Digitized by srujanika@gmail.com

ମେନେଜର—ହୋଇପାରନ୍ତି ?

ପ୍ରୋପ୍ରାଇଟର—ହୋଇପାରନ୍ତି ? ବିନା ଦରମାରେ ଛଅ ମାସ କାମ କରିବାର ହୁକୁମ ଦିଆଗଲା ।

[ ଯିବାକୁ ଉଦ୍ୟତ ହେଲେ ]

ମେନେଜର—(ପ୍ରୋପ୍ରାଇଟରଙ୍କ ପଛେ ପଛେ ଯାଇ) ପଣ୍ଡିତ୍‌ମେଣ୍ଟଟା ଠିକ୍‌ଏ ହାର୍ଡ଼ ହୋଇଗଲା, ଠିକ୍‌ଏ ରିକନ୍‌ସିଡ଼ର କରନ୍ତୁ ଆଜ୍ଞା !

ବଡ଼ବାବୁ—ଆଜ୍ଞା, ଏତେ କାମ ମୁଁ ଏକୁଟିଆ ପାରୁନି, ଆଉ ଜଣେ—

ପ୍ରୋପ୍ରାଇଟର—ଆଉ ଜଣେ ? କମ୍ପାନୀ ସମ୍ପତ୍ତିରେ ତୁମେସବୁ ପଣି ଲଗେଇବ ନା କଣ ? ପନ୍ଦର ଜଣଙ୍କ ଠେଙ୍କାରେ ଏ ଛୋଟିଆ ଦୋକାନ, ସେ ତୁମକୁ ଦରମା ଦେବାରେ ନଷ୍ଟ ହୋଇଯିବ !

[ ବଡବାବୁ ବସି ପୁଣି କାମରେ ମନ ଦେଲେ ]

ମେନେଜର—ନାହିଁ ଆଜ୍ଞା, ଏତେ ବଡ଼ କମ୍ପାନୀଟା ଆମର ଖରାପ ହୋଇଯିବ ! (ବେଲ୍ ଦେଇ) ଚପରାଶି—ଚପରାଶି !

ପ୍ରୋପ୍ରାଇଟର—ବେଲ୍ ଦିଆଯାଉଚି—ପୁଣି ଚପରାଶି, ଚପରାଶି ଡାକି ହଉଚି, ତେବେ କି ଚପରାଶି ଏତେ ପାଖରେ ଠିଆ ହେଉଚି— ଏ କୁଆଡ଼ା ଅଦବକାଇଦା ?

ମେନେଜର—ବଡ଼ ବଡ଼ ଫାର୍ମରେ ଏମିତି ହୁଏ ଆଜ୍ଞା, ମୁଁ ଦେଖିଚି ।

ପ୍ରୋପ୍ରାଇଟର— ଅଚ୍ଛା, ଦେଖିଚ ! (ବିରକ୍ତ ହୋଇ) ନା, ତୁମ ହାତରେ ଏ ଅଫିସ କାମ ଚଳିବନି, ତୁମେ ଏଠୁ ବିଦାୟ ନିଅ ।

ମେନେଜର—ହଠାତ୍ ବିଦାୟ ଆଜ୍ଞା ? ମୁଁ ଏ ଛୋଟିଆ କମ୍ପାନୀ ମେନେଜର କାମ ବଡ଼ ସୁରୁଖୁରୁରେ ଚଳେଇ ଆସୁଚି ।



Digitized by srujanika@gmail.com

ପ୍ରୋପ୍ରାଇଟର—ସୁପ୍ରିଣ୍ଟେଣ୍ଡେଣ୍ଟ ? ଏ ଘର ଏତେ ଅପରିଷ୍କାର ହୋଇଛି କାହିଁକି ?

ମ୍ୟାନେଜର—କଣ କରିବୁଁ—ଏ ଘରଟାରେ ତ କୋଇଲା ରହୁଛି—ଅଫିସ ହେଉଛି—ଆଉ ଚପରାସି ମୁଁ ଗଣ୍ଡେ ଗଣ୍ଡେ ଫୁଟେଇ ଖାଉଛୁଁ ।

ପ୍ରୋପ୍ରାଇଟର—ସେଥିରୁ କଣ ହେଲା ? ଘରକୁ ଠିକ୍ ପରିଷ୍କାର କରିଦେଉନା ? କିଏ ଯଦି ବାହାରୁ ଆସିବ, ସେ ଆମକୁ କଣ କହିବ ?

ମ୍ୟାନେଜର—ଆଜ୍ଞା, ଜଣେ ପାର୍ଟଟାଇମ୍ ଚାକର ରଖିବାକୁ ହୁକୁମ ହେଉ !

ପ୍ରୋପ୍ରାଇଟର—ହ୍ୱାଟ୍, ଏତେ ଜଣ ଫୁଲ୍‌ଟାଇମ୍ ଲୋକ ରଖି ପୁଣି ପାର୍ଟଟାଇମ୍ ଚାକର ଦରକାର ? ତୁମେମାନେ ବୋଧହୁଏ କୋଢ଼ି ହୋଇଗଲଣି ! ଇମିତ ଅଳସୁଆ ହେଲେ ଦେଶ ଚଳିବ କିମିତ ? ନିଜେ ସଫା କରିଦିଅ, ନିଜେ ସଫା କରିଦିଅ—

ମ୍ୟାନେଜର—( ବଡ଼ବାବୁ ଓ ଚପରାସିକୁ ଚାହିଁ ) ନିଜେ ସଫା କରିଦିଅ, ନିଜେ ସଫା କରିଦିଅ । ( ପ୍ରୋପ୍ରାଇଟରଙ୍କୁ ଚାହିଁ ) ହେଲେ, ବହୁତ କାମ ଆଜ୍ଞା !

ପ୍ରୋପ୍ରାଇଟର—ବହୁତ କାମ ! କମ୍ପାନୀକୁ ଖାଲି ଠକି ପଇସା ନେବ ବସିକି ବୋଲି ନା ? ଆଜିଠାରୁ ତୁମ ସମସ୍ତଙ୍କର ଦରମା ବନ୍ଦ ।

ବଡ଼ବାବୁ—( ବ୍ୟସ୍ତଭାବରେ ଠିଆ ହୋଇ ) ଦରମା ବନ୍ଦ ଆଜ୍ଞା ? ସବୁ ବନ୍ଦ କରନ୍ତୁ; କିନ୍ତୁ ଦରମା ବନ୍ଦ କରନ୍ତୁ ନା ।

Digitized by srujanika@gmail.com

ପ୍ରୋପ୍ରାଇଟର—ଅରେ, ଏଇଟା ଇମିତ କଣ୍ଠ ଥରେଇ କଥା କହୁଚ, ଗୁଲଗୁଲ କର ଗୁହୁଁଚ, ଏଇଟା କଣ ଲେଖାଲେଖି ଘରେ କି ?

ମେନେଜର—ହେଁ, ହେଁ, ଲେଖାଲେଖି ଦସ୍ତୁରମତ କରନ୍ତି ନା ! ବଡ଼ବାବୁ ଅମର ଜଣେ ପ୍ରକାଣ୍ଡ କବି ।

ପ୍ରୋପ୍ରାଇଟର—କୋବ ! ବାହାର କରିଦଅ, ବାହାର କରିଦଅ । କବି, ଲେଖକ ଏମାନଙ୍କଦ୍ୱାରା ଆମ ବ୍ୟବସାୟ ଚଳିବନି, ସବୁ କଥାରେ ଦରଦ, ସମସ୍ତଙ୍କପ୍ରତି ଦୟା, ଏମାନଙ୍କ ଅନୁଷ୍ଠାନ ଚଳେଇବେ କଣ !

ମେନେଜର—ସଗନ୍ତୁନ ଆଜ୍ଞା, ଅମେ ଏ ଘରକୁ ଅଜ ସଫା କରିଦଉଚୁଁ, ଇଲେ ସଫା କରିଦଉଚୁଁ—ଚପରାଶି, (ବେଲ୍ ଦେଇ) ଚପରାଶି, ଚତୁର, ଚତୁରାନନ୍ଦ—

ପ୍ରୋପ୍ରାଇଟର—ଓଃ, ଚୁପ୍ କର । କେତେବେଳେହେଁ ଶଳେଇଉଚ ହେ ? ମଣିଷର ମୁଣ୍ଡ ବୁଲେଇଦଉଚ । ଯାଉଚ କାଠଅଡ଼ା ଅଛେ, ଅଚ୍ଛା ଏ କୁକୁର ଏଠି ରହିଲା, ଯାକୁ ମୋ ବଙ୍ଗଳାକୁ ପଠେଇଦବ—

[ ଗୁଲି ଯାଉଥିଲେ, ଫେର ପଡ଼ି କହିଲେ ]

କାଁଓ ମେନେଜର ବାବୁ, ତୁମେ ପରା କହୁଥିଲ ଗୋଟେ ଭଲ ମୁର୍ଗିଛୁଆ ଆଣିଦବ ବୋଲି ?

ମେନେଜର—କଣ କରିବ ଆଜ୍ଞା, ବସ୍ତି ଆଡ଼େ ଯାଇ ପାରିନି । ଏଇଥିଭିତରେ ଆଣି ଦେବ । ହେଲେ, ଆମ ଦରମା କଣ ଷଡରେ ବନ୍ଦ ଆଜ୍ଞା ?

ପ୍ରୋପ୍ରାଇଟର—ହଁ, ଦରମା ବନ୍ଦ ।

Digitized by srujanika@gmail.com

ମେନେଜର—ଆପଣ ମିଛଟାରେ ମିନା ଆମ ଉପରେ ଷଡ଼ଯନ୍ତ୍ର,
ନଇଲେ ଦୁନିଆଯାକ ତ ଇମିତି ଚାଲିଚି—

ପ୍ରୋପ୍ରାଇଟର—କଣ ଦୁନିଆଯାକ ଚାଲିଚି ?

ମେନେଜର—ଦୁନିଆଯାକ ଖାଲି କୋଇଲା କମ୍ପାନୀ ! ଆଜ୍ଞା !
ଦେଶର ଯେତକ ଅନୁଷ୍ଠାନ, ସବୁ ତ ଇମିତି ଚାଲିଚି—

ପ୍ରୋପ୍ରାଇଟର—ଖାଲି ବାଜେ କଥା ! କିଛି ଶୁଣାଯିବନି, ତୁମ
ସମସ୍ତଙ୍କ ଦରମା ବନ୍ଦ ।

ମେନେଜର—ଦରମା ବନ୍ଦ ଆଜ୍ଞା, ଦରମା ବନ୍ଦ ?

[ ପ୍ରୋପ୍ରାଇଟର ଚାଲିଗଲେ, ତାଙ୍କ ପଛେ ପଛେ
ମେନେଜର ମଧ୍ୟ ଗଲେ ]

ଚତୁର ଓ ବଡ଼ବାବୁ—ଦରମା ବନ୍ଦ !

ଚତୁର—( ବଡ଼ ନିଃସ୍ପୃହଭାବରେ ବଡ଼ବାବୁଙ୍କ ପାଖକୁ ଯାଇ )
ବାବୁ, ଆଉ କାହିଁକି ? କାମ ବନ୍ଦ କରନ୍ତୁ ।

ବଡ଼ବାବୁ—କରେ, କାମ ବନ୍ଦ କଲେ ଏ ଅଫିସ୍ ଚଳିବ କିମିତି ?

ଚତୁର—ଆଉ ଦରମା ବନ୍ଦ ହେଲେ ଆମେ ଚଳିବା କିମିତି ?

ବଡ଼ବାବୁ—ହଁ ରେ ଚତୁର, ଆମେ ଚଳିବା କିମିତି !

ଚତୁର—( ପାଖରେ ବସି ଧୀର କଣ୍ଠରେ ) ବଡ଼ବାବୁ, ତୁମ
ପାଖରେ ଟଙ୍କା ନାହିଁ ? ଘରୁ ଚିଠି ଆଇଥିଲା ପିଲାଙ୍କ ଦେହ ଖରାପ,
କଣ କରିବି ? କୁଆଡ଼ୁ କିଛି ଧାର ଉଧାର ପାଇଲିନି ।

ବଡ଼ବାବୁ— ମୋ ପାଖରେ ତ ଟଙ୍କା ନାହିଁ ।

Digitized by srujanika@gmail.com

ଚତୁର—କଣ ଟଙ୍କା ନାହିଁ ବାବୁ ? ତୁମେ ଏତେ ବହି ଲେଖୁଚ, ଏତେ ଛବି ଅଙ୍କୁଚ—

ବଡ଼ବାବୁ—ଲେଖା ଆଉ ଛବିର ମର୍ଯ୍ୟାଦା କଣ ଆଜକାଲି କିଏ ବୁଝୁଚି ? ଦେଖିଲ ଦେଖୁନ, ରୂପମହଲକୁ ଏତେ ବହି ଦେଲି ଯେ ଧଉଡ଼ ଦଉଡ଼ ନୟାନ୍ତ ହେଲିଣି, କାଣିକଉଡ଼ିଟାଏ ବି ମିଳିଲାନି !

ଚତୁର—ତେବେ କଣ କରିବି ଆଜ୍ଞା, ଟଙ୍କା ତ ମୋର ଭାରି ଦରକାର !

ବଡ଼ବାବୁ—ତୋର କେତେ ଦରକାର ?

ଚତୁର—ଆଜ୍ଞା, ଦଶ ଟଙ୍କା ହେଲେ ଚଳିଯିବ ।

ବଡ଼ବାବୁ—ଏତେ ତ ମୋ ପାଖେ ନାହିଁ, ଦୁଇଟି ଟଙ୍କା ଅଛି । ଇଲେ ସେ କାବୁଲିକୁ ୧୫ ଟଙ୍କାର ହ୍ୟାଣ୍ଡନୋଟ୍ ଲେଖିଦେଇ ପାଞ୍ଚଟି ଟଙ୍କା ପାଇଲି, ସିଥିରୁ ସେ ତାର ସୁଧ ଓ ଖର୍ଚ୍ଚା ବାବତକୁ ଆଗରୁ ତିନି ଟଙ୍କା କାଟିନେଲା, ବାକି ଯୋଡ଼ଏ ଟଙ୍କା । ଗୋଟେ ଟଙ୍କା ଥାଉ, ମୁଁ ପିଲାଙ୍କପାଇଁ ବିସ୍କୁଟ ମେରିକା ନେବି, ଆଉ ନିଜେ କଣ ଟିକେ ଖାଇବି । ତୁ ଗୋଟିଏ ଟଙ୍କା ନେ—

ଚତୁର—ହଉ, ଦଅନ୍ତୁ ଆଜ୍ଞା, ସ୍ତ୍ରୀ ଦହ ଖରାପ, ଔଷଧମନ୍ତ୍ର କିଛି ପଠେଇଦିଏଁ । ଟଙ୍କାକରେ ତ ଆଉ ଡାକ୍ତରୀ ଭଲ ଔଷଧ ମିଳିବନି । ସେଇ ହୋମିଓପାଥି ଶସ୍ତା ପଡ଼ିବ, ତାକୁଇ ପଠେଇବି ।

ବଡ଼ବାବୁ—ଶସ୍ତା ଦେଖି ଔଷଧ ପଠେଇଦୁ ନା ପୁଥିରେ ଦହ ଭଲ ହବ—

Digitized by srujanika@gmail.com

ଚତୁର—ଭଲ ମନ୍ଦ ବର୍ତ୍ତିବାକୁ ପଇସା କାହିଁ, ଶତ୍ରୁକୁ ରୁହଁ ଯାହା ମିଳିଲା ନା—ହଉ ଦଅନ୍ତୁ ଅଜ୍ଞା, ମୁଁ ଯାଏଁ—

ବଡ଼ବାବୁ—( ବଡ଼ବାବୁ ପକେଟ ଦେଖିଲେ, ହାତ ପକେଟଭିତର ଦେଇ ବାହାରକୁ ଦେଖାଗଲା) କଟରେ, ମୋ ଟଙ୍କା କୁଆଡ଼େ ଗଲା ?

ଚତୁରା—ଟଙ୍କା କିଏ ପକେଟରୁ ନେଇଗଲା ନା କଣ ?

ବଡ଼ବାବୁ— ହଁ, କିଏ ପକେଟମାରୁ କାଟିଦେଲା ତ !

ଚତୁର—ତୁମେ ଠିକ ସାବଧାନ ହେଇ ଆସୁନ ବାବୁ ! ଆଜିକାଲି ବାଟରେ ଘାଟରେ ଏତେ ଚୋର ଉଠିକଇତ—

ବଡ଼ବାବୁ—ରାସ୍ତାରେ ଯାଉଥିଲି ସଜାଡ଼ିଲା ବେଳେ ଗୋଟେ ଲୋକ ମତେ ସାହାଯ୍ୟ କରିବା ନାଁରେ ଏପଟ ସେପଟ ହଉଥିଲା—

ଚତୁର—ତେବେ ତ ଏ ତାର କାମ ! ଆଜିକାଲି ଲୋକ ଠକିବାକୁ ଏତେ କିସମର ବାଟ ଧରିଲେଣି—

ବଡ଼ବାବୁ—ତେବେ ଚତୁର, କଣ କରିବା କହିଲୁ ? ମୁଁ କିଛି ଖାଇନି

ଚତୁରା—କିଛି ଖାଇନ ବାବୁ ?

ବଡ଼ବାବୁ—ନା, କିଛି ଖାଇନି ! ଅଚ୍ଛା, ତୁ ଗଲୁ ଚାରି ଛ ପଇସାର ଚିନାବାଦାମ କାହାଠାରୁ ଧାର କରି ଆଣିବୁ ।

ଚତୁର—ଧାର ଆଜ୍ଞା, ଆମକୁ ଆଉ ଧାର କିଏ ଦବ ? ଆମ ଅଫିସ ଚାରିପାଖେ ତ ଯେତେକ ଦୋକାନ ସମସ୍ତଙ୍କଠୁ ଏତେ ଧାର ହେଲଣି ଯେ ସେ ଦୋକାନୀଗୁଡ଼ାକ ଦେଖିଲେ ମାରି ଗୋଡ଼ାଉଛନ୍ତି—ମୁଁ ଲୁଚି ଲୁଚି ଯା-ଆସ କରୁଛି ବୋଲି, ନହେଲେ—

Digitized by srujanika@gmail.com

ବଡ଼ବାବୁ—ଅଚ୍ଛା, ତୁ ଏ ଛବି ଖଣ୍ଡିକ ନେ—ଯଦି କିଏ ରଖି
ଦିଅଣା ଚାରଣା ଦବ ।

ଚତୁର—( ଛବିକୁ ଦେଖି ) ଆଜ୍ଞା, ଲୋକେ ଆଜିକାଲି ଅନେକ
କିସମର ରଙ୍ଗ ଦେଇ ଛବି କରୁଛନ୍ତି । ତୁମେ କାଳି କାଳି
କଳା କାଗଜରେ ଆଙ୍କୁଚ, ତାକୁ କିଏ ନବ ଭଲା ?

ବଡ଼ବାବୁ—ରଙ୍ଗ ମୁଁ କୁଆଡୁ ପାଇବି ଚତୁର ? ତୁ ଯା ଦେଖିନା
ଏଇଟା ଆମ କୋଣାର୍କ ମୁଖଶାଳାର ଫଟ, ଯଦି କିଏ ରଖି
ଦିଅଣା ଚାରଣା ଦିଏ ।

ଚତୁର—କଣ ଆଜ୍ଞା, ଆପଣ ମୂର୍ଖଙ୍କ ପରି ମୁଖଶାଳା ମୁଖଶାଳା
ହଉଛନ୍ତି, ଏ ଭଙ୍ଗା ଦେଉଳ ଚିତ୍ର କିଏ ନବ ? ଯଦି ମାଇକିନିଆ
ଛବି ଅଛି, ବାହାର କରନ୍ତୁ ।

ବଡ଼ବାବୁ—ଅଚ୍ଛା, ତେବେ ନେ । ଏଇଟା ଗୋଟେ ପରୀର ଛବି—

ଚତୁର—ପରୀ ଛବି ? ଦିଅନ୍ତୁ, ଦିଅନ୍ତୁ, ତାହେଲେ ନାଗର ଜୁଟିବେ !

[ଛବି ନେଇ ଚାଲି ଯାଉଥିଲା ]

ବଡ଼ବାବୁ—ଶୁଣ୍, ଅଧାକର ବାରମଜା, ଅଣାକର ଚିନାବାଦାମ
ଆଣିବୁ, ଆଉ ପଇସା ଯଦି ବଳିଲା, ବିସ୍କୁଟ ଆଣିବୁ—

ଚତୁର—ହଉ ଆଜ୍ଞା !

ବଡ଼ବାବୁ—ଜଲଦି ଆସିବୁ ଚତୁର ! ମୁଣ୍ଡ ଭାରି ଲାଗୁଛି । ମୁଁ ଏଇଠି
ଶୋଇଛି, ବା ଖଟରେ ପଡ଼ିଗଲି ।

[ ଚତୁର ପୁଣି ଚାଲିଯାଉଥିଲା ]

ଆରେ, ଡା. କୁକୁରଟା ନେଇ ଯା । ବଙ୍ଗଳାରେ ଦେଇଦବୁ—

Digitized by srujanika@gmail.com

ଚତୁରା—ଏ କୁକୁରଟାକୁ ନେବ ? ଏଇଟା କମିତ ଜିମିତ ଗୁହୁଁଟ । (କୁକୁର ପାଖକୁ ଯାଇ) ନାହିଁ ଆଜ୍ଞା, ଏଇଟା କାମୁଡ଼ାଟେ ନା କଣ ନା । ମୁଁ ନେଇପାରିବିନି, ସେ ମେନେଜର ବାବୁ ଆସନ୍ତୁ ।

[ଚତୁରା ଚାଲିଗଲା । ବଡ଼ବାବୁ ଟେଘାଡ଼େଇ ଢୋଇ ଶୋଇ ପଡ଼ିଲେ, ପଛରେ ପଛରେ ମେନେଜର ଆସି ପହଞ୍ଚିଗଲେ ।]

ବଡ଼ବାବୁ—ଉହୁଁ-ଉହୁଁ (ଜରରେ କମ୍ପିଲେ)

ମେନେଜର—ଏ କଣ ଏ କଣ, ବଡ଼ବାବୁ ? ଶୋଇପଡ଼ିଲ କଅଁ ? ମ୍ୟାକୁ ଧର୍ମଶାଳା ମନେ କଲ ନା କଣ ? (କୁକୁରକୁ ଦେଖି) କଉଁ ? ତୁମେ ଏତେବେଳଯେ ସାହାବଙ୍କ କୁକୁରଟା ବଙ୍ଗଳାକୁ ପଠେଇନ ?

ବଡ଼ବାବୁ—ଆଜ୍ଞା, ସେଇଟା କାମୁଡ଼ା କୁକୁରଟେ, ଚତୁରକୁ ପାଖେ ପୂରେଇଦେଲାନି ।

ମେନେଜର—ପାଖେ ପୂରେଇଦେଲାନି ! ତାର ଏତେ ସୁନ୍ଦର କୁକୁରଟା, ଏଲ୍‌ସିଆନ୍ ଟାଇପ୍ କି କଣ ?

ବଡ଼ବାବୁ—ନାହିଁ ଆଜ୍ଞା, ସେଇଟା କାମୁଡ଼ ଗୋଡ଼ଉଟ ।

ମେନେଜର—ସାହାବ କୁକୁର ତୁମକୁ କାମୁଡ଼ ଗୋଡ଼ାନ୍ତାନି ଆଉ କଣ ସତେଇରେ ଆଲିଙ୍ଗନ କରନ୍ତା ! ହଉ ଉଠ, ଉଠ, ଘର ସଫା ହବ ।

ବଡ଼ବାବୁ—ଆଜ୍ଞା, ମୋ ଦେହ ଭାରି ଖରାପ ।

ମେନେଜର—କିଛି ଶୁଣ୍‌ବେ ନାହିଁ ମାଙ୍ଗ୍‌ତା, ସାହେବ ଡନାଅଣିଷ ଡ୍ରୋଗ୍ରାଇଟରଙ୍କ ହୁକୁମ, ଜଲଦି ଉଠ, ଜଲଦି—

ବଡ଼ବାବୁ—ଆଜ୍ଞା, ମୁଁ ଆଜି କିଛି ଖାଇନି ।

Digitized by srujanika@gmail.com

ମେନେଜର—ଗୋଲ୍ ମାଲ୍ ମତ୍ କରେ । ମୁଁ କିଛି ଶୁଣିବନି । ତୁମ କଥାସବୁ ଶୁଣି ଶୁଣି ଦରମା ବନ୍ଦ ହେଲା । ଆଉ ମୋ ଚାକିରୀ ଯିବ ନା କଣ ? ଦଶ ମିନିଟ୍ ସମୟ ଦେଲି, ତୁରନ୍ତ ଠିକ୍‌ଠାକ୍ ହୋଇଯାଅ, ମୁଁ ଡ୍ରେସ୍ ବଦଳେଇ ଆସୁଛି । ଆରେ, ସେ ଚତୁର ଗଲାକୁଆଡ଼େ ?

ବଡ଼ବାବୁ—ଆଜ୍ଞା, ସେ ଟିକେ ଜଳଖିଆ ପାଇଁ ଯାଇଛି ।

ମେନେଜର—ଜଳଖିଆ ! ଦରମା ବନ୍ଦ ହେଲାଣି, ତୁମେ ପୁଣି ଜଳଖିଆ ଖାଉଛ ? ଅତି ଶୀଘ୍ର ରେଡ଼ି ହୋଇ ଯାଅ, ପ୍ରୋପ୍ରାଇଟର ସାହେବ ପୁଣି ଇଲେ ଆସି ପହଞ୍ଚିବେ ।

[ ମେନେଜର କୁକୁରକୁ ନେଇ ଚାଲିଗଲେ, ବଡ଼ବାବୁ ଶୋଇପଡ଼ିଲେ । ପରେ ପରେ ଚତୁର ଆସି ପହଞ୍ଚିଲା । ]

ବଡ଼ବାବୁ—(ଜ୍ୱରରେ ଥରି) ଉହୁ ଉହୁ ।

ଚତୁର—ଆଜ୍ଞା, ଉଠନ୍ତୁ ।

ବଡ଼ବାବୁ—ଆଣିଲୁ ଚତୁର ? ଆଣିଲୁ ?

ଚତୁର—ହଁ, ଆଜ୍ଞା, ମୋ ନାଁ ଚତୁରଟି । ମୁଁ ଗୋଟେ ମହା ଦାଲାଲ । କୋଇଲକମ୍ପାନୀ-ଡାଲମ୍ ପାଖରେ ପଡ଼ିଛି ନା କଣ ? ପାନ ଦୋକାନୀକୁ ପଟେଇପଟେଇ କରି ଦ'ଅଣା ପଇସା ମାରି ଆଣିଲି —ନିଅ ଏ ଚିନାବାଦାମ, ଏ ବାରମଜା ।

ବଡ଼ବାବୁ—ହଉ ଦେ ଦେ । ( ପୁଡ଼ିଆ ନେଇ ) ଏ ଚିନାବାଦାମ ରହିଲା ପିଲାଙ୍କ ପାଇଁ, ଆଉ ଏ ବାରମଜା ଆମର । ନେ, ତୁ ଦଣ୍ଡା ପାଟିରେ ପକା ।

[ ନିଜେ ପାଟିରେ ପକେଇ ଚୋବେଇଲେ ]



Digitized by srujanika@gmail.com

ହଇରେ ଚତୁର୍ବ, ଏ ଗୃହ ପଇସା ଲେଖାଏଁ ! କଣ ଦ ଦ ପଇସାର ହେଲା ଭଳିଆ ଦିଶୁଚି ?

ଚତୁର୍ବ—ଆଜ୍ଞା, ଦୁନିଆରେ ସବୁ ଜିନିଷ ତ ମହଙ୍ଗା ହେଇଗଲା, ଆଜ ଗୃହପଇସାକୁ ଆପଣଙ୍କୁ ଚିନାବାଦାମ କିଏ ଦୋହେଁ ଦବ ଯେ—

ବଡ଼ବାବୁ—( ଚୋବାଉ ଚୋବାଉ ହଠାତ୍ ମୁଖ ବିକୃତ କରି ) ଅରେ, ଏଗୁଡ଼ାକ କଣ ଖାଲି ବାଲି ?

ଚତୁର୍ବ—ଆପଣ ଠିକ ଦେଖି ଗୃହ୍ଣ୍ଟି ଖାଉ ନାହାନ୍ତି ଆଜ୍ଞା ! କାଲି ମହରଗ ହେଲାରୁ ଲୋକେ ସମସ୍ତେ ଠକ ହେଇଗଲେ । ଠିକିଏ ଆଖିବୁଜିଆ ହବ ବୋଲି ସେ ଦୋକାନୀ ବାପୁଡ଼ା ବାଲି ଗଣ୍ଡେ ମିଶେଇଦେଇଚି । ସେ ବିଚାରି ଆଉ କଣ କରିବ ? ତାର ତ ପୁଣି ପେଟପାଟଣା ଅଛି ।

[ ବଡ଼ବାବୁ ଅସ୍ତେ ଅସ୍ତେ ଚୋବାଉଥାନ୍ତି, ମୁହଁ ବଡ଼ ବିକୃତ ଆକାର ଧରୁଥାଏ ]

ବଡ଼ବାବୁ—ନା, ଏ ଜମା ଖାଇ ହଉନି ।

ଚତୁର୍ବ—ଖାଲି ସିମିତ ଗିଳି ଦଅନ୍ତୁ ନା, ଆପଣ ଦାନ୍ତ କାହିଁକି ଲଗଉଚନ୍ତି ? ଏ କଣ ଅନ୍ୟ ଖାଇବା ଜିନିଷ ହେଇଚି ? ଏ ବଜାର ଚିନାବାଦାମଟି ! ହଁ, ବଡ଼ବାବୁ, ଟଙ୍କା କଥା କହୁଥିଲି ପରା । କଣ କରିବ, ମୋର ତ କିଛି ନ ହେଲେ ନ ଚଳେ ।

ବଡ଼ବାବୁ—ତୋର ଭାରି ଟଙ୍କା ଦରକାର, ନା ଚତୁର୍ବ ?

ଚତୁର୍ବ—ଅଜ୍ଞା, ଭାରି ଦରକାର ।

Digitized by srujanika@gmail.com

ବଡ଼ବାବୁ—ତୁ ତେବେ ମୋ ସାଇକେଲଟା ନେଇଯା, ଦୋକାନରେ ବିକି କିଛି ଟଙ୍କା ଆଣିବୁ ।

ଚତୁର—ଆଜ୍ଞା, ଆପଣ ସାଇକଲ ବିକିବେ ?

ବଡ଼ବାବୁ—କଣ କରିବି, ଅବଶ୍ୟ ମୋ ପାଠପଢ଼ା ଦିନର ସାଇକେଲ୍ ସେ । ମୋଠାରୁ କେତେ ଅତ୍ୟାଚାର ସହିଛି, କେତେ ବିପଦ ଆପଦରେ ମତେ ସାହାଯ୍ୟ କରିଛି । ହେଲେ ଆଉ ଉପାୟ ନାହିଁ, ଏଥର ବିକିବାକୁ ହବ ।

ଚତୁର—ଆଜ୍ଞା, ସେ ସାଇକଲକୁ ସଜଡ଼ାସଜଡ଼ି କରିଦେଲେ ସିନା କାହାକୁ ଠକାଠକି କରିଦେଇଅନ୍ତେ । ଏଅଳି ଅବସ୍ଥାରେ ତାକୁ କିଏ ନବ ? ତାକୁ ଟିକେ ମରାମତି କରିଦିଅନ୍ତୁ—

ବଡ଼ବାବୁ—ତାକୁ ମରାମତି କଲେ ଯେତିକି ଖର୍ଚ୍ଚ ହବ, ତାଠୁ କିଛି ଟଙ୍କା କମ୍‌ରେ ନୂଆ ସାଇକେଲଟେ ମିଳିପାରିବ । ମୋ ପାଖରେ ଏତେ ଟଙ୍କା କାହିଁ ? ତୁ ଯା ବିକିବାକୁ ଚେଷ୍ଟା କର । ଦୋକାନୀମାନେ ସାଇକେଲ ମରାମତି କରିବାକୁ ଅନେକ ପାର୍ଟ ଦରକାର କରନ୍ତି । ଅନ୍ତତଃ ଏଥିରୁ—

[ ହଠାତ୍ ମେନେଜର ପହଞ୍ଚିଗଲେ ]

ମେନେଜର—କଣ ଗୁହାରୀ ଚାଲିଛି ? କାଓ, ଅଫିସ କାମ ନ କରି ତୁମେ ଖାଲି ଘୋରଣା ବୁଣିଲ ପରି ପାକୁଳି ଚଳେଇଛ ? ତୁମର ଏ ମଧୁର ପାକୁଳି ଡାର୍‌ଉଇନ ସାହେବ ଯା ନ ଦେଖିଲେ ! ତୁମ ଏ ଚିନାବାଦାମ ଗୁହାରୀ ତାଙ୍କ ଆଖିରେ ପଡ଼ିଥିଲେ ମନୁଷ୍ୟର ପୂର୍ବ ପୁରୁଷ ଯେ ମର୍କଟ ପରି କୌଣସି ଜୀବ ଥିଲେ ଏ କଥା ପ୍ରମାଣ କରିବାପାଇଁ ସେ ବିଚରା ଏତେ ପରିଶ୍ରମ ପଡ଼ି ନ ଥାନ୍ତା !

Digitized by srujanika@gmail.com

ବଡ଼ବାବୁ—ଆଜ୍ଞା, କଣ କରିବ ? କିଛୁ ଖାଇ ନ ଥିଲି ।

ମେନେଜର—ଏଥର ଖାଇବ ଯେ, ଦରମା ତ ବନ୍ଦ !

ଚତୁର୍ଭୁଜ—ସତରେ ଦରମା ବନ୍ଦ ଆଜ୍ଞା !

ମେନେଜର—ନାହିଁ, ସତରେ ନୁହେଁ ମିଛରେ । କୁକୁର ନେଇ-
ଯାଇଥିଲି, ପ୍ରୋପ୍ରାଇଟର ସାହେବ ଅର୍ଡ଼ରଟା ହାତେ ହାତେ
ଦେଇଦେଲେ—ଦରମା ବନ୍ଦ ।

ବଡ଼ବାବୁ—ଦରମା ବନ୍ଦ ?

ଚତୁର୍ଭୁଜ—ଦରମା ବନ୍ଦ ?

ମେନେଜର—ଦରମା ବନ୍ଦ—ବିଲ୍‌କୁଲ୍ ବନ୍ଦ ।

ଚତୁର୍ଭୁଜ—ଦରମା ବନ୍ଦ ?

[ ମେନେଜର ଚୁଲିଗଲେ । ଚତୁର୍ଭୁଜ ସାଇକେଲ କାଢ଼ିଇ
ତାଙ୍କ ପଛ ଧରିଲା ]



Digitized by srujanika@gmail.com

# ଦ୍ୱିତୀୟ ଦୃଶ୍ୟ

[ ରାଜପଥ—ଜଣେ ଭିକାରି ଗୀତ ବୋଲି ବୋଲି ଯାଉଥିଲା । ଚତୁର ସାଇକେଲ କାଟେଇ ଆସି ଶୁଣୁଥାଏ । ]

ବାବୁଧନରେ ! ଏ ତ ପରପଞ୍ଚ ଦୁନିଆ ମନ୍ଦ
ସଭିଏଁ ସିଆଣା କଥା ଚକୁଣିଆଁ
ଅସଲ ବେଲକୁ ଖାଲି ମକୁନ୍ଦ । ୦ ।

ଏଇ ମୁଲକର କତ କଳାକାର
କାରିଗର ହେଲେ ଅଚଳା ବେକାର

ରକତ ଦେଇ ଯେ ଗଢନ୍ତି ଏ ଜାତି
କବିତାଂ ଯାହାର ଦୁଲକାଏ ଛାତି

ପ୍ରାଣ ଦେଇ ଯିଏ କଳାକୁ ବଞ୍ଚାନ୍ତି
(ଏବେ) ହୁଅନ୍ତି ଅଧା ସେ କି ହୀନମାନ

କିଏ ମରେ ଗଡ଼ି ରାସ୍ତା କଡ଼େ ପଡ଼ି
କାହାର ମେସ୍‌ରେ ମିଇଲ୍ ବନ୍ଦ । ୧ ।

କିଏ ପେଟ ପାଇଁ ଧରିଚି ନିଠାଇ
ବୋଇଲା କମ୍ପାନୀ ଗୃହିଣୀ ପସି

ଦାନ ଖିତ ଖଟି ବେଲ ଯାଏ ଛୁଟି
(କାନ୍ଥ) ପେଟ ଗୃହିଣୀଙ୍କ ନ ହୁଏ ପରି

Digitized by srujanika@gmail.com

ଯେ ବୁଝି ପାରନ୍ତି                ପ୍ରକୃତିର ବାଣୀ
ଯେ କହନ୍ତି ପୁଣି ସୃଷ୍ଟିର କାହାଣୀ
(ତାଙ୍କ) ଠଙ୍କାପାଞ୍ଚଠାର                ସ୍ୱଭାବ କଭାବ
ବଡ଼ବୁଦ୍ଧିଆ ସେ ବଡ଼ ସାହାବ
କର ନ ପାରନ୍ତି କେବେ ପସନ୍ଦ । ୨ ।

ଆଲୁଅ ଅଭାବେ                ବସି ଟକେ ଅନ୍ଧାରେ
ଭଳି ଭଳି ରଚେ ଅପୂର୍ବ ଛନ୍ଦ
କବିତା ଉଚ୍ଛ୍ୱାସେ                ମନର ଉଲ୍ଲାସେ
ମନେ ମନେ ଦେଖେ ପୂନେଇଁ ଚାନ୍ଦ
ବଡ଼ ବିଷମ ଏ                ବିଧି ବିଧାନ
ଭୁଞ୍ଜା କପିଳାଙ୍କ ଭାର ଗୁମାନ
କାଶୀ ବଉଡ଼ିକି                ଯୋଗ୍ୟ ଯେ ନୁହନ୍ତି
(ସେ) ସବୁଠାରେ ଲଭୁଥାନ୍ତି ସମ୍ମାନ
(କିନ୍ତୁ) ଜଗତକୁ ଯିଏ ଦିଅନ୍ତି ଆନନ୍ଦ
ସେ ତ ଜୀବନେ ଜାଣନ୍ତି ନାହିଁ ଆନନ୍ଦ । ୩ ।

[ ଗୀତ ବୋଲି ବୋଲି ଚାଲିଗଲା ]

[ ରୂପମହଲ ଲିମିଟେଡ୍‌ର ଅଭିନେତ୍ରୀ ମିସ୍ ଚଞ୍ଚଳା ଓ ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର ପ୍ରବେଶ କଲେ । ଉଭୟଙ୍କର ବେଶଭୂଷା ବେଶ୍ ମାର୍ଜିତ । ଏମାନେ ଯେ ରଙ୍ଗମଞ୍ଚର ଅଭିନେତା ଅଭିନେତ୍ରୀ, ଏ କଥା ସ୍ତାରେ ଯୁଙ୍କ ଚାଲିଚଳଣ ଓ ଢଙ୍ଗରଙ୍ଗରୁ ବେଶ୍ ଜଣା ପଡୁଛି । ]

Digitized by srujanika@gmail.com

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ବୁଝିଲ ମିସ୍ ଚଞ୍ଚଳା, ତୁମ ଆକ୍ଟିଂଟା ମତେ ଇମିତ ଭଲ ଲାଗେ, ଆଉ କଣ ସେ କଥା କହୁବ । ବେଳେବେଳେ ତୁମେ ଖଣ୍ଡେ ଖଣ୍ଡେ ଯେଉଁ ପୋଜ୍ ଦେଇଦିଅ, ଆହା କି ଚମତ୍କାର ! ସୁରେୟା ନର୍ଗିସ କାହିଁକି ସେଥିକି ଲକ୍ଷ୍ୟ ହବ !

ଚଞ୍ଚଳା—କିନ୍ତୁ ଡିରେକ୍ଟର ଆଉ ଅସିଷ୍ଟାଣ୍ଟ ଡିରେକ୍ଟର ବାବୁ ତ ମୋ ଆକ୍ଟିଂକୁ ଆଦୌ ପସନ୍ଦ କରନ୍ତିନି !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ସେ ଆଉ ପସନ୍ଦ କରନ୍ତେ କମିତ ? ତାର କାରଣ—

ଚଞ୍ଚଳା—କାରଣ ସେମାନେ ଚାହାନ୍ତି ସବୁ ପ୍ଲେଟରେ ସୁଲୋଚନା ହିରୋଇନ୍ ହଉ ।

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ବୁଝିଲନି, ମିସ୍ ଚଞ୍ଚଳା ! ସୁଲୋଚନା ସହିତ ସେମାନଙ୍କ ସମ୍ବନ୍ଧଟା ତ ଆଉ ଅଛପା ନାହିଁ ।

ଚଞ୍ଚଳା—ସେ ସମ୍ବନ୍ଧଟା ବ୍ୟକ୍ତିଗତ । ସେଥିରେ ଥିଏଟର କମ୍ପାନୀର କଣ ଅଛି ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ମୁଁ ତ ସେଇଆ କହେଁ ମିସ୍ ଚଞ୍ଚଳା ! ତୁମ ବ୍ୟକ୍ତିଗତ ସମ୍ବନ୍ଧ ତୁମପାଖେଁ ଥାଉ । ତୁମେ ସେଇଟା ନେଇ ଥିଏଟର କମ୍ପାନୀଟାକୁ କାହିଁକି ଖରାପ କରୁଚ ?

ଚଞ୍ଚଳା—ସେ ଯାହାହଉ , ମୁଁ ଏଥର ସ୍ପଷ୍ଟ କହୁ ଦେଇଚି, ଆସନ୍ତା ପ୍ଲେରେ ଯଦି ମତେ ହିରୋଇନ୍ ନ କରାଯାଏ, ତେବେ ମୁଁ କମ୍ପାନୀ ଛାଡ଼ିଦେବି ।

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଠିକ୍ କହୁଚ, ଠିକ୍ କହୁଚ ମିସ୍ ଚଞ୍ଚଳା ! ତୁମେ ସେଇ କଥାଟା ଖୁବ୍ ଜୋର୍‌ରେ ଧର, ମୁଁ ବୋରବୋର ତୁମ ପଛରେ ଅଛି ।

Digitized by srujanika@gmail.com

ଚଞ୍ଚଳା—ତୁମେ ତ କନ୍ତୁ ସେ ଦିନ ସୁଲୋଚନା ହେବେଇନ୍ ହବା ପ୍ରସ୍ତାବରେ ସାଙ୍ଗେ ସାଙ୍ଗେ ହଁ କରିଦେଲ !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ହଁ କରିବାକୁ ମୁଁ ବାଧ୍ୟ ହେଲି ମିସ୍ ଚଞ୍ଚଳା ! ସେ ଯେତେବେଳେ ହଜଚନ୍ଦ୍ର ଡିରେକ୍ଟର, ଅସିଷ୍ଟାଣ୍ଟ ଡିରେକ୍ଟର । ଆଉ ମୁଁ ତାଙ୍କ ତଳେ ଜଣେ ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର ଭାବରେ କେବଳ ମୃତ ସୈନିକ, ନେପଥ୍ୟ କୋଳାହଳ ଇତ୍ୟାଦିର ପରିଚାଳନା କରୁଛି, ସେତେବେଳେ ମୁଁ ତାଙ୍କ କଥାରେ ବାଧ୍ୟତଃ ଏକମତ ହେଇଯିବା ନିତାନ୍ତ ଦରକାର; କିନ୍ତୁ ଅନ୍ତରରେ ମୁଁ ତାର ଘୋରତର ପ୍ରତିବୋଧ କରି ଆସିଛି । କି ଆଶ୍ଚର୍ଯ୍ୟ କଥା, କାହିଁ ମିସ ଚଞ୍ଚଳ, ଆଉ କାହିଁ ସୁଲୋଚନା—କାହିଁ ରାଣୀ ( ଚଞ୍ଚଳାକୁ ଚାହିଁ ) କାହିଁ ଚାକରାଣୀ—

[ ବଡ଼ବାବୁ ଆସି ପହଞ୍ଚିଲେ, ସେ ଜଣରେ କମ୍ପୁଛନ୍ତି ]

ବଡ଼ବାବୁ—ହେ – ହେ, (ସବ୍-ଅସିଷ୍ଟାଣ୍ଟ ଡିରେକ୍ଟରଙ୍କୁ) ନମସ୍କାର ଆଜ୍ଞା, (ଚଞ୍ଚଳାଙ୍କ ପ୍ରତି) ନମସ୍କାର—

ସବ୍ ଅସିଷ୍ଟାଣ୍ଟ ଡିରେକ୍ଟର ଓ ଚଞ୍ଚଳା—ନମସ୍କାର ।

ବଡ଼ବାବୁ—ମୁଁ ତ ଏ ଭଦ୍ରମହିଳାଙ୍କୁ—

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଚିହ୍ନିପାରୁ ନାହାନ୍ତି ? କି ଆଶ୍ଚର୍ଯ୍ୟ କଥା ! ଏ ହଉଚନ୍ତି ଖୋଦ ମିସ୍ ଚଞ୍ଚଳା, ଆମ ରୂପମହଲ ଲିମିଟେଡ୍ର ହିରୋଇନ୍ ।

ବଡ଼ବାବୁ—ରୂପମହଲର ହିରୋଇନ୍ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ହଁ, ଆମ ଥିଏଟର କମ୍ପାନୀର ହିରୋଇନ୍ ଏକ୍ସ ଅଫିସିଓ ମାନେ ଷ୍ଟାଣ୍ଡିଙ୍ଗ୍ ହିରୋଇନ୍ ।

Digitized by srujanika@gmail.com

ବଡ଼ବାବୁ—ମାନେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ମାନେ ଯେତକ ଆମର ଷ୍ଟେ ହୁଏ ସେସବୁଥିରେ ଏ ହିରୋଇନ୍ ହୁଅନ୍ତି ବା ହିରୋଇନ୍ ହବାକୁ ପ୍ରସ୍ତୁତ ଥାନ୍ତି ।

ବଡ଼ବାବୁ—ଓ, ଅଚ୍ଛା, ମୋ ବହିଗୁଡ଼ିକ ଯେ ଦେଇଥିଲି କଣ କରୁଛ ହେଲ ?

ଚଞ୍ଚଳା—ଆପଣ କଣ୍ଟୁ ବହି ଲେଖି ଆମ କମ୍ପାନୀକୁ ଦେଇଚନ୍ତି ? କଣ ନାଟକ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ହଁ, ନାଟକ । ହେଲେ ସେସବୁ ଷ୍ଟାଣ୍ଡାର୍ଡ଼କୁ ଆସୁନ ମିସ୍ ଚଞ୍ଚଳା ! ମୁଁ ଅନେକଥର କହିଲାଣି—

ଚଞ୍ଚଳା—ହିରୋଇନ୍ ପାର୍ଟସବୁ କିମିତି ଅଛି ?

ବଡ଼ବାବୁ—ମୋ ନାଟକରେ ସେମିତି ବଧିବନ୍ଧା ହିରୋଇନ୍ ପାର୍ଟ କିଛି ନାହିଁ, ବୁଝିବାକୁ ଗଲେ ସମସ୍ତେ ହିରୋଇନ୍ ପୁଣି ବୁଝିବାକୁ ଗଲେ କେହି ହିରୋଇନ୍ ନୁହନ୍ତି ।

ଚଞ୍ଚଳା—ଆପଣ କହୁଚନ୍ତି କଣ ? ହିରୋଇନ୍ ନ ଥାଇ ପୁଣି ନାଟକ ହେଇପାରେ !

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ସେ ନାଟକଗୁଡ଼ାକ ବଡ଼ କିମ୍ଭୂତ-କିମାକାର, ସେଥିରେ ଫିମେଲ୍ କ୍ୟାରେକ୍ଟର ହଉଚନ୍ତି ହାଡ଼ଆଣ୍ଡୀ, ବାଉରାଣୀ, ଭିକାରୁଣୀ, ଗୃହିଣୀ । ଆଉ ହିରୋଇନ୍ କଥା କହୁଚନ୍ତି କଣ ?

ବଡ଼ବାବୁ—ଗୋଟେ ଅଧଲରେ କାଳୁ ବଧିବନ୍ଧଭାବରେ ହିରୋଇନ୍ ଅଛନ୍ତି ।



Digitized by srujanika@gmail.com

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ହଁ, ଗୋଟେ ବହିରେ ବେଶ୍ୟା ହିରୋଇନ୍, ଆଉ ଗୋଟେ ବହିରେ ଯେ ହିରୋଇନ୍ ସେ ଗ୍ରେବ କରୁଛି ।

ଚଞ୍ଚଳା—ଇସ୍, ବେଶ୍ୟା ହିରୋଇନ୍ ! ହିରୋଇନ୍ ପୁଣି ଗ୍ରେବ କରୁଛି ! କି ଖରାପ ରୁଚି ! ଆପଣ ଭାବୁଚନ୍ତି ସେପରି ନାଟକ ଆମ ଥିଏଟରରେ ଚଳିବ ? ମୁଁ କିନ୍ତୁ ସ୍ପଷ୍ଟ କହିଦେଉଛି—ଏପରି ବହି ଯଦି କୁପମଣ୍ଡଳରେ ହୁଏ, ମୁଁ ସେଥିରେ ଆଦୌ ପାର୍ଟ ନେବିନି ।

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଆପଣ ତ ଷ୍ଟାଣ୍ଡିଙ୍ଗ୍ ହିରୋଇନ୍ ହେଇ ପାର୍ଟ ନେବେନି, ଆଉ ତାଙ୍କ ବହି କମ୍ପାନୀରେ ଚଳିବ କିମିତି ମିସ୍ ଚଞ୍ଚଳା ?

ବଡ଼ବାବୁ—( ଚଞ୍ଚଳକୁ ଚାହିଁ ) ଆପଣ ଟିକେ ଅନୁଗ୍ରହ କରି ଦେଖିବେ ଆଜ୍ଞା, ନୂଆ ପ୍ରକାରର ଲେଖା ।

ଚଞ୍ଚଳା—ନୂଆ ପ୍ରକାରର ଲେଖା ? ଆପଣଙ୍କ ଚେହେରାରୁ ଜଣାପଡ଼ୁଚି, ଆପଣ କି ନୂଆ ପ୍ରକାରର ଲେଖା ଲେଖିବେ !

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଦେଖନ୍ତୁ ବଡ଼ବାବୁ, ଆପଣ ଟିକେ ଡେକିଲ ଭଳି ଡ୍ରାମାଟିକ୍ ସିଚୁଏସନ୍ ବହିରେ ଦିଅନ୍ତୁ ।

ବଡ଼ବାବୁ—ମଣିଷଜୀବନ ତ ଆଦୌ ଡେକିଉଠୁନି, ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର ବାବୁ ! ଗୃହେଆଡ଼େ ହାହାକାର, ଗୃହଆଡ଼େ ହା-ହତାଶ । ଆଜି ରଙ୍ଗମଞ୍ଚରେ କଣ ଡ୍ରାମାଟିକ୍ ସିଚୁଏସନ୍ ଡେକିଉଠିବ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ମାନେ ଏଇ ବନ୍ଧୁକ ଫୁଟାଫୁଟି—

Digitized by srujanika@gmail.com

ଚଞ୍ଚଳା—ହଁ, ହୁଏତ୍ ଯାଇ ରିଭଲ୍‌ଭର୍ ଫାୟାର୍ କରି ହିରୋଇନ୍‌କୁ ରକ୍ଷା କରୁଥିବ—

ସବ୍-ଆସିଷ୍ଟାଣ୍ଟ୍ ଡିରେକ୍‌ଟର—ହିରୋ କିଷ୍ଟୁବଲୀଙ୍କ କଥାବାର୍ତ୍ତା ପରି ଓଜସ୍ୱିନୀ ବକ୍ତୃତା କରୁଥିବ । ଖାଇଲାପିଇଲା ବେଳେ ଝାଇଙ୍ଗ୍ ସୁଟ୍ ପିନ୍ଧି ମଦ୍ ମଦ୍ ମାଡ଼ ଗୁଳାପାଉଥିବ—ଠିକେ ଠିକେ କଥାରେ ବନ୍ଧୁକ ଦେଖାଇଦେଉଥିବ, ଠିକେ ଠିକେ କଥାରେ ଗୁଳି ଚଳେଇଦେଉଥିବ !

ବଡ଼ବାବୁ—ବୁଝିଲେ ସବ୍-ଆସିଷ୍ଟାଣ୍ଟ ଡିରେକ୍‌ଟର ବାବୁ, ଅନେକ ଦିନ ପରାଧୀନ ଥିବାରୁ ବନ୍ଧୁକ ତ କୁଁ ପଟୁ ଧରି ହୁଏ ତା ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କୁ ଜଣା ନାହିଁ, ଯୁ କଥା ଜୀବନରେ ସମ୍ଭବ ନୁହେଁ—

ସବ୍-ଆସିଷ୍ଟାଣ୍ଟ ଡିରେକ୍‌ଟର—ଆପଣ ଅଚ୍ଛା ବନ୍ଧୁଚନ୍ଦ୍ର ବଡ଼ବାବୁ, ନାଟକ ସହିତ ଜୀବନର କି ସମ୍ବନ୍ଧ ? ଆପଣ ଏ ଓ୍ୱାଇଲ୍ଡ ମୁଭିଟୋନ୍, ରଣଜିତ୍ ମୁଭିଟୋନ୍‌ର ସିନେମା ଦେଖୁ ନାହାନ୍ତି ? ସାଇକେଲବାଲା, ବଣ୍ଟରବାଲା, ଗ୍ରୁବ୍‌ବାଲା ପିଲ୍ କରି ସାରି ହିନ୍ଦୁସ୍ଥାନକୁ ସେମାନେ ଚମତ୍କେଇଦେଇ ସାରିଲେଣି । ( ଅଭିନୟ କରି ) ଖାଲି ପଁଦରେ ଉପରକୁ ଉଠିଯିବ, ପଁଦରେ ତଳକୁ ଖସିଆସିବ ।

ଚଞ୍ଚଳା—ହଁ, ଖାଲି ଠିକେ ଠିକେ କଥାରେ ଝଙ୍କଝଙ୍କା, କୁହୁଡ଼ କୁଆ-ପଥର ସୃଷ୍ଟି କରୁଥିବ—ଆପଣ କଣ ସିନେମା ଦେଖୁନାହାନ୍ତି ?

ବଡ଼ବାବୁ—ଅଜ୍ଞା, ମୁଁ ତ ସିନେମା ଦେଖେନା ।

ଚଞ୍ଚଳା—ଆପଣ ସିନେମା ଦେଖନ୍ତନି, ଅଥଚ ନାଟକ ଲେଖିବାକୁ ଅସ୍ପର୍ଦ୍ଧା ! ଆପଣ ଯାନ୍ତୁ, ବୃଥାରେ ଆମ ସମୟ ନଷ୍ଟ

Digitized by srujanika@gmail.com

କରନ୍ତୁନି, ଅସନ୍ତୁ ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର ବାବୁ ! ସିନେମା ବେଳ ହୋଇଗଲାଣି ।

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଅଚ୍ଛା ବଡ଼ବାବୁ, ଆପଣ ଯାନ୍ତୁ । ମୁଁ ଚେଷ୍ଟା କରୁଚି, ବହି ସିଲେକ୍ଟ ହେଲେ ଖବର ଦେବି—

ବଡ଼ବାବୁ—ଟିକେ ଭଲଦ ଦେଖିବେ ଆଜ୍ଞା, ମୋର ଟଙ୍କା ବହୁତ ଦରକାର ।

ଚଞ୍ଚଳ—ଟଙ୍କା ! ଏପରି ଲେଖାରେ ଆପଣଙ୍କୁ ଟଙ୍କା କିଏ ଦେବ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ହଁ, ଆପଣ ଟଙ୍କା ଉପରେ ବିଶେଷ ଜୋର୍ ଦେବେନି, ବଡ଼ବାବୁ ! ଅନେକ ଲେଖକ ବିନା ପଇସାରେ ବହି ଦେବାକୁ ପ୍ରସ୍ତୁତ, ଦରକାର ହେଲେ ସେମାନେ ଆମ ପିଲ୍ମରେ ମଧ୍ୟ ହାତରୁ କିଛି କିଛି ।

ବଡ଼ବାବୁ—ହାତରୁ କିଛି କିଛି ଅର୍ଥ ଖର୍ଚ୍ଚ କରି ବହି ଦିଅନ୍ତି ଲେଖକମାନେ ?

ଚଞ୍ଚଳ—ଦେବେନି, ଆମ ଛଡ଼ା ସେ ତାଙ୍କର ଆଉ ଉପାୟ ନାହିଁ ! ବିନା ଆମେ ଆଶୀର୍ବାଦ ନ କଲେ ତାଙ୍କ ନାଟକଲେଖା ଯେ ଅସମ୍ଭବ—

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଆମେ ସିନ୍ ଏସନ୍ ସଜାଡ଼ି ଦେଉଁ, ବଚନିକା ଠିକ୍ କରୁଁ, ସେ କେବଳ ତାକୁ ଖାତାରେ ଉତାରି ଦେଇ ଅଙ୍କ ଦୃଶ୍ୟରେ ଆରେଞ୍ଜ୍ କରିଦିଅନ୍ତି ।

ବଡ଼ବାବୁ—ଓ !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ତେବେ ଆପଣ ନିରାଶ ହନ୍ତୁନି । ମୁଁ ଚେଷ୍ଟା କରିବି । କିନ୍ତୁ ମନେ ରଖନ୍ତୁ, ଆପଣଙ୍କ ବହି ସିଲେକ୍ଟ ହେଲେ ମୋ ପର୍ସେଣ୍ଟେଜ୍ଟା ନିଶ୍ଚିତ—

Digitized by srujanika@gmail.com

ବଡ଼ବାବୁ—ପରେସ୍ ଟେଣ୍ଟର୍ ? (ଟିକେ ପରେ) ମୁଁ ପ୍ରଭୃତ ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର ବାବୁ ! ଆଉ କଣ କରିବ ? ଟଙ୍କା ଯେ ମୋର ନିତାନ୍ତ ଦରକାର, ଟଙ୍କା ଯେ ମୋର ନିତାନ୍ତ ଦରକାର—

[ କହୁ କହୁ ବଡ଼ବାବୁ ଚାଲିଗଲେ ]

ଚଞ୍ଚଳା—ହେଁ ହେଁ (ହସି), ଲୋକଟା ଏକଦମ୍ ବୋକା, ଯା ଚେହେରା ଇମିତ, ସେ ପୁଣି ନାଟକ ଲେଖିବ !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଲେଖୁଚି ଉଚିତ ଅଧିକେ; କିନ୍ତୁ ଲୋକେ ଯାହା ଚାହୁଁଛନ୍ତି ସେ କଥା ଫୁଟେଇପାରୁନି—

ଚଞ୍ଚଳା—କେମିତି ଆଉ ଫୁଟେଇପାରିବ ! ଲେଖକର ଯିମିତି ବେଶଭୂଷା, ଭାବଭଙ୍ଗୀ, ଆଚାରପ୍ରକାର ଥିବା ଦରକାର, ସେଇଟା ତ ତାର ନାହିଁ—

[ ଶ୍ୱେତାଙ୍ଗ ମିଃ ଷ୍ଟିଭେନ୍ସ ପହଞ୍ଚିଲେ ।
ହାତରେ ବ୍ୟାଗ୍, ପାଟିରେ ପାଇପ୍ ]

ଷ୍ଟିଭେନ୍ସ—ଗୁଡ୍ ଇଭ୍‌ନିଂ ଟୁ ବୋଥ୍ ଅଫ୍ ଇଉ—ମାନେ ଆପଣ ଉଭୟଙ୍କୁ ସୁସନ୍ଧ୍ୟା ।

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର ଓ ଚଞ୍ଚଳା—ଗୁଡ୍ ଇଭନିଂ ।

[ ମିସ୍ ଚଞ୍ଚଳା ନମସ୍କାର ଭଙ୍ଗୀରେ ହାତ ଉଠାଇଲେ ]

ଷ୍ଟିଭେନ୍ସ—ହାଉ ଡୁ ୟୁ ଡୁ—ମାନେ ଆପଣମାନେ କିମିତି କରୁଚ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଆଜ୍ଞା, ଆପଣ ଭଲ ? ଆମେ ତ ରେକଗ୍‌ନାଇଜ୍ କରିପାରୁନୁ ସାର୍ !

Digitized by srujanika@gmail.com

ଷ୍ଟିଭେନ୍‌ସ—ଆଇ ଆମ୍ ଏ ମ୍ୟାନ୍ ଅଫ୍ ହଲିଉଡ୍—ମାନେ ହାମେ ହଉଚେ ହଲିଉଡ୍‌ର ଲୋକ। ମାଇଁ ନେମ୍ ଇଜ୍ ମିଷ୍ଟର ଷ୍ଟିଭେନ୍‌ସ। ମୁଁ ଇଣ୍ଡିଆ ମାନେ ହିନ୍ଦୁସ୍ଥାନମେ ଲଷ୍ଟ ଫାଇଭ୍ ଇଅର୍ସ ରହାଇଉଡ୍ ଖରୁଚେ। ହାମେ ହଲିଉଡ୍‌କେ ଲିୟେ ଡ୍ରାମା ମାନେ ନାଟକ, ଷ୍ଟୋରି ମାନେ କାହାଣୀ ଆଣ୍ଡ ଫୋକ୍ ସଙ୍ଗସ୍ ସେଲେକ୍ଟ ଖରୁଚେ। ଆପ୍ ମାନେ ଇଜ୍ ହାମେ ରୁପମହଲ ଲିମିଟେଡ୍‌କୁ ଲେଡ୍ ଦେଖେଇପାରବେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ନିଶ୍ଚୟ ଦେଖେଇପାରିବୁ ସାର୍ ! ମୁଁ ହଉଚି ରୂପମହଲ ଲିମିଟେଡ୍‌ର ପ୍ରଧାନ ସାହାଯ୍ୟକାରୀ ସହକାରୀ ନିର୍ଦ୍ଦେଶକ।

ଷ୍ଟିଭେନ୍‌ସ—ହ୍ୱାଟ୍—ପ୍ରଧାନ୍ ସାହାଡ୍ୟକାରୀ ସାହାକାରୀ—

ସବ୍-ଆସିଷ୍ଟାଣ୍ଟ୍ ଡିରେକ୍ଟର—ଡିରେକ୍ଟର—

ଷ୍ଟିଭେନ୍‌ସ—ଓଃ ! ଡିରେକ୍ଟର, ଭେରି ଗୁଡ୍, ଭେରି ଗୁଡ୍। ଭେରି ହାପି ଟୁ ହାଭ୍ ମେଡ୍ ଆକ୍ୱେନ୍‌ଟାନ୍‌ସ ଉଇଥ୍ ଇଉ। ହାମେ ଆପ୍‌କା ସାଥ୍ ପରିଚୟ୍ ହୋକର ଭେରି ଖୁସ୍ ହୁଆ। ଆଣ୍ଡ ସି ଇଜ୍ ଇଓର ଓ୍ୟାଇଫ୍ ମାନେ ସେ ଆପକା ଓ୍ୟାଇଫ୍ ହେ ?

ନଈଲା—ସ୍ତ୍ରୀ ! ନା, ନା, ମୁଁ ହୁସେଇନ୍, ମୁଁ ହୁସେଇନ।

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ସେ ହୁସେଇନ୍, ଆମ ଥିଏଟର କମ୍ପାନୀର ଏକ୍‌ସ ଅଫିସିଓ ମାନେ ଷ୍ଟାଣ୍ଡିଙ୍ଗ୍ ହୁସେଇନ୍।

ଷ୍ଟିଭେନ୍‌ସ—ଓ, ଡିରେକ୍ଟର ଏଣ୍ଡ ହୁସେଇନ୍। ଭେରି ଗୁଡ୍, ଉଡ୍‌ହ୍ ଅଚ୍ଛା, ଆପକା ଅଭି କ୍ୟା ଚଲ୍ ରହାହେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ସୀତା ବନବାସ।

Digitized by srujanika@gmail.com

ଷ୍ଟିଭେନ୍ସ—ସୀତା ବନୋବାସ—କ୍ୟା ମାନେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ବ୍ୟାନିଶ୍‌ମେଣ୍ଟ ଅଫ୍ ସୀତା ।

ଷ୍ଟିଭେନ୍ସ—କ୍ୟା ସୋସିଆଲ୍ ଅଭି ମିନ୍ ସାମାଜିକ ନାଟକ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ନା, ମାଇଥଲଜିକାଲ୍ ।

ଷ୍ଟିଭେନ୍ସ—ଓ, ଆପ ଲୋଗ୍ ଅଭିତକ୍ ମାଇଥଲଜିକାଲ୍ ଡ୍ରାମା ପସନ୍ଦ କରୁଛ । ହାଉ ଇଜ ନୋ ସୋସିଆଲ ଡ୍ରାମା ମାନେ ଆପକା କୁଛୁ ସାମାଜିକ ଡ୍ରାମା ନେହିଁ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଏଠି କେଉଁ ଭଲ ସାମାଜିକ ଡ୍ରାମା ରାଇଟର୍ ନାହାନ୍ତି ।

ଷ୍ଟିଭେନ୍ସ—କୋଇ ନାହିଁ, ନୋ ସନ ପ୍ଲେରାଇଟ ? ମାଇ ଗଡ୍— ଆପକା ପାଶ୍ କୋଇ ସୋସିଆଲ ଡ୍ରାମା ନାହିଁ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଅଛୁ କେତେ ଗୁଡ଼େ, ହେଲେ ସେସବୁ ଭଲ ନୁହେଁ ।

ଷ୍ଟିଭେନ୍ସ—ଭଲ ନାଏଁ ? ଅଚ୍ଛା, କ୍ୟାନ୍ ଇଜ ପ୍ଲିଜ୍ ଟେଲ୍ ମି ଦ ପ୍ଲଟସ୍ ? ଆପ୍ ଉସ୍‌କା ପ୍ଲଟ୍ ହାମେ କହିପାରବେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଆଜ୍ଞା, ସେଗୁଡ଼ାକର କଥାବସ୍ତୁ ଭଲ ନୁହେଁ ।

ଷ୍ଟିଭେନ୍ସ—ପ୍ଲିଜ୍ ଟେଲ ମି ।

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଏଇ ଦେଖନ୍ତୁ, କିଏ ହ୍ରାଇ କରି ସର୍ଭିସ୍ ପାଉନି, କିଏ ବନ୍ଧୁ ଠାରୁ କୋର୍ଟସିପ୍ କରି ବାହା ହେଇ ପାରୁନି, କିଏ ଖାଇବାକୁ ପାଉନି, କିଏ ବେଗ୍ କରି ଚଳୁଛି ।

Digitized by srujanika@gmail.com

ହ୍ଚିଭେନ୍ସ—ଭେରି ଗୁଡ୍, ଭେରି ଗୁଡ୍—ମାନେ ଭଉଚ ଅଚ୍ଛା, ପ୍ରେଜେଣ୍ଟ ଡେ ପ୍ରୋବ୍ଲେମସ୍ । ଭେରି ଅପ୍-ଟୁ-ଡେଟ୍ ମାନେ ଅତି ଅଦ୍ଭୁତ । ଅଚ୍ଛା, କ୍ୟାନ୍ ଇଉ ଗିଭ୍ ମି ଦେୟାର୍ ସିନୋପ୍ସିସ୍ ମାନେ ଅପ ହାମେ ଉସ୍କା ସିନୋପ୍ସିସ୍ ହ୍ୱାଟ୍ ଡୁ ୟୁ ସେ ଟୁ ସିନୋପସିସ୍ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ସାରାଂଶ ।

ହ୍ଚିଭେନ୍ସ—ହାଁ, ସାରାଂଶ ହାମେ ସାରାଂଶ ଦେଇ ଶକବେ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ହଁ, ଦେବ ଆଜ୍ଞା ।

ହ୍ଚିଭେନ୍ସ—ହ୍ୱାଟ୍ ଇଜ୍ ଦ ନେମ୍ ଅଫ୍ ଦ ରାଇଟର ମାନେ ରାଇଟର କା କ୍ୟା ନାମ ହେ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ନରେନ୍ଦ୍ରନାଥ ଦାସ, ଏଇ ଗୁଜଲଅ-ଗଞ୍ଜ କୋଇଲା କମ୍ପାନୀର ହେଡ୍ ଅସିଷ୍ଟାଣ୍ଟ ।

ହ୍ଚିଭେନ୍ସ—ଅଇ ସି ମାନେ ହାମ୍ ଦେଖୁଚ (ଟିପିନେଲେ)

ଚମ୍ପଲା—ଆଜ୍ଞା, ଏଥିପାଇଁ ଟଙ୍କା ?

ହ୍ଚିଭେନ୍ସ—ଟାକା, ହାଃ ହାଃ, ଦ ଲେଡି ଇଜ୍ ଭେରି,କ୍ଲେଭର ଭଉଚ୍ ସମ୍ଝଦାର ଅଉରତ୍ ହେ । ଅଲ୍ ରାଇଟ୍, Take this fifty ( ଟଙ୍କା ଦେଲେ ), ପ୍ଲିଜ୍ ସୋ ମି ଅନ୍ ସିଟି ହୋଟେଲ—ଅପ୍ ହାମେ ସିଟି ହୋଟେଲମେ ଭେଟିବ, ହାଁ କଣ୍ଟୟୁ ଦେଖିବ, ଆଁ ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ନିଶ୍ଚୟ, ନିଶ୍ଚୟ ।

ଚମ୍ପଲା—ନିଶ୍ଚୟ, ନିଶ୍ଚୟ ।

ହ୍ଚିଭେନ୍ସ—ଓ. କେ., ଗୁଡନାଇଟ, ହାମେ ଆସେ—

Digitized by srujanika@gmail.com

ସବ୍-ଆସିଷ୍ଟାଣ୍ଟ୍ ଡିରେକ୍ଟର ଓ ଚଞ୍ଚଳା—ହେଁ, ହେଁ, ଗୁଡ୍‌ନାଇଟ୍, ଗୁଡ୍‌ନାଇଟ ।

[ଦୁହେଁ ହାତ ଟେକି ନମସ୍କାର କଲେ, ଷ୍ଟିଭେନ୍‌ସ ହସି ହସି ଚାଲିଗଲେ ।]

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ହାଃ-ହାଃ, ଭଲ ଯୋଗାଡ଼ ହେଲା ତ । ଆମ ଦାରମା ପଚାଶ ଟଙ୍କା ନୁହେଁ, ଏ ଆମକୁ କେତଟା ବହିର ସିନୋପ୍‌ସିସ୍ ପାଇଁ ଆଡ୍‌ଭାନ୍‌ସ ଦେଲା ଏକଦମ୍ ପଚାଶ ଟଙ୍କା !

ଚଞ୍ଚଳା—ଆଜି ଭଲ ସିନେମା ଦେଖାଟା ହବ ।

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—କେବଳ ଆଜି, ଇଲେ କେତେ ଦାନ ଚଳିବ ନା !

ଚଞ୍ଚଳା—ତା ନିଶ୍ଚୟ; କିନ୍ତୁ ଦେଖନ୍ତୁ ସବ୍ ଆସିଷ୍ଟାଣ୍ଟ ଡିରେକ୍ଟର ବାବୁ, ଏସବୁରେ ସାହାଯ୍ୟ କରିବାକୁ ମୁଁ ତୁମ ପଛେ ପଛେ ବୋଝବୋହି ଅଛି । ହେଁ-ହେଁ (ହସିଲେ)

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ହେଁ-ହେଁ ( ହସି ) ଦେଖ, ତା ରହନ୍ତୁ କି ନା ? ତୁମେ ଏକସ୍-ଅଫିସିଓ ମାନେ ଷ୍ଟାଣ୍ଡିଂ ହୁରେଇନ୍ ଟି—ହାଃ ହାଃ (ହସିଲେ)

ଚଞ୍ଚଳା—ହାଃ-ହାଃ (ହସିଲେ)

[ ସବ୍ ଆସିଷ୍ଟାଣ୍ଟ ଡିରେକ୍ଟର ଓ ମିସ୍ ଚଞ୍ଚଳା ଚାଲିଗଲେ, ରୂପମହଲ ଲିମିଟେଡ଼ର ଡିରେକ୍ଟର ଆସିଷ୍ଟାଣ୍ଟ୍ ଡିରେକ୍ଟର ପହଞ୍ଚିଗଲେ—ଅଦ୍ଭୁତ ବେଶଭୂଷା, ରଙ୍ଗମଞ୍ଚର ଢଙ୍ଗ ରାଜପଥରେ ପୂରା ଅଛି ରହିଛି । ଯୁାଙ୍କର ଷ୍ଟେଜ୍ ନାଁ ନନ୍ଦୀ ଓ ଭୃଙ୍ଗୀ । ]

Digitized by srujanika@gmail.com

ନନ୍ଦୀ ଓ ଭ୍ରୁକୁଟୀ—ଲ ଲ ଲ—(ତୁଣ୍ଡରେ ଗୀତଧରି ପହଞ୍ଚିଲେ)

ନନ୍ଦୀ—ଆରେ କମ୍ପାନୀକା ମାଲ ଦରିଆମେ ଡାଲ, କମ୍ପାନୀ ଗୁଏଁ କମ୍ପାନୀ ବାହାରକୁ ଠିଆ ହେଇଥିବ; କିନ୍ତୁ ଭିତରେ ଖାଲି ମୃଦଙ୍ଗ—

ଭ୍ରୁକୁଟୀ—କମିଛି ବା ସାଙ୍ଗ ?

ନନ୍ଦୀ—ପ୍ରଥମତ ଗୋଟେ ରୁପମହଲ ଗୃହ ଖେଳିବାକୁ ପଡ଼ିବ— !

ଭ୍ରୁକୁଟୀ—ମାନେ ?

ନନ୍ଦୀ—ମାନେ, ଲେଖକଙ୍କଠୁ ତ ଗୃହ ଲେଖିଆ ବାଦେ କମିଶନ କିଛି ମିଳିବ, ଡିରେକ୍ସନ ବାବଦରେ କମ୍ପାନୀଠୁ ପ୍ରଥମତ ଟଙ୍କା ହାଙ୍କିବାକୁ ପଡ଼ିବ। ତା ବାଦେ କମ୍ପାନୀ ଚଳୁ ବା ନ ଚଳୁ, ଆମ ଦରମାରେ ତ କିଏ ହାତ ଦେବେନି ! ପ୍ଲାପରେ ଗୋଟାକେତେ ଅଲଜନ୍ସ ଫାଲଜନ୍ସ ଯୋଡ଼ି ଦେଲେ—

ଭ୍ରୁକୁଟୀ—ହେଲେ, କିଛି ତ ପୁଣି ଖର୍ଚ୍ଚ କରିବାକୁ ପଡ଼ିବ !

ନନ୍ଦୀ—ଖର୍ଚ୍ଚ କଣ ?

ଭ୍ରୁକୁଟୀ—ଯେତେବେଳେ ଡିରେକ୍ଟର ହେଇଥାଉଁ, କିଛି ବହି ପଢ଼ିବା ତ ଦରକାର ।

ନନ୍ଦୀ—ବହି ପଢ଼ି କଣ କିଏ ଡିରେକ୍ଟର୍ ହୁଏ Directors are born, never made.

ଭ୍ରୁକୁଟୀ—ତେବେ ଅନ୍ତତଃ ଖବରକାଗଜ ଖଣ୍ଡେ ପଢ଼ିବା ଦରକାର ।

ନନ୍ଦୀ—ଧେତ୍, ସେଥିରେ ଓରିଜିନାଲିଟି ନଷ୍ଟ ହୋଇଯିବ ବେ !

Digitized by srujanika@gmail.com

ଭ୍ରୁକୁଟୀ—ବାଃ-ବାଃ, ଦେଖିଲୁ ସାଙ୍ଗ ତୋର ବୁଦ୍ଧି ହାଇ୍—

[ ଚାଲି ଯାଉଥିଲେ । ହଠାତ୍ ଷ୍ଟିଭେନ୍ସଙ୍କୁ ଦେଖି ଫେରି ଆସିଲେ ]

ଷ୍ଟିଭେନ୍ସ—ହଲୋ, ଗୁଡ୍ ଇଭ୍ନିଂ ଜେଣ୍ଟଲମେନ୍ । ହାଉ ଡୁ ୟୁ ଡୁ—

ନନ୍ଦୀ—ନୋ ଡୁ ସାର୍ ।

ଭ୍ରୁକୁଟୀ—ଥେଟର୍ ଡୁ ସାର୍, ଥେଟର ।

ଷ୍ଟିଭେନ୍ସ—ୟୁ ଲୁକ୍ ଭେରି ଫନି, ଆଇ ମିନ୍ ଏ ଡ୍ରେସ୍ ତୁମକୁ ଅଚ୍ଛା ମାଲୁମ ହୋଟା ହେ । ଇଜ୍ ଦେୟାର୍ ଏନି ସର୍କସ୍ ଗୋଇଙ୍ଗ୍ ଅନ୍ ହିଅର୍ ?

ନନ୍ଦୀ ଓ ଭ୍ରୁକୁଟୀ—ସର୍କସ୍ ? ( ପରସ୍ପରକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ )

ନନ୍ଦୀ—ନୋ ସର୍କସ ସାର୍ !

ଭ୍ରୁକୁଟୀ—ନୋ ସର୍କସ ଗୋଇଙ୍ଗ୍ ସାର୍ !

ଷ୍ଟିଭେନ୍ସ—ଦେନ୍, ହ୍ୱେୟାର୍ ଡୁ ୟୁ ୱାର୍କ ? ତୁମ୍ ୱାର୍କ କାହାଁ କର୍ତେ ?

ନନ୍ଦୀ—ଆମେ ରୂପମହଲ ଲିମିଟେଡ୍‌ର କଳାକାର ।

ଭ୍ରୁକୁଟୀ—ରୂପମହଲ କାହିଁକି, ଆମେ ହଉଚୁ ଦେଶର କଳାକାର ।

ଷ୍ଟିଭେନ୍ସ—ଡେଶର କଳାକାର ? ୟୁ ମିନ୍ ଟୁ ସେ ୟୁ ବ୍ଲାକ୍‌ନ୍ ଦ କଣ୍ଟ୍ରି ମାନେ ଅପ୍ ଡେଶକୋ କାଲା କରତେ ?

ନନ୍ଦୀ—ନୋ, କଳା ଡୁ, ସାର ଆମେ ଧ୍ୱଜମନସ୍, ଆକ୍ଟର ସାର୍—

ଭ୍ରୁକୁଟୀ—ଭେରି ଗୁଡ୍ ହ୍ୱଜମର୍ସ ଆକ୍ଟର୍ସ ସାର୍ !

ଷ୍ଟିଭେନ୍ସ—ଓ ଆକ୍ଟର୍ସ ? ବଟ୍ ୟୁ ଲୁକ୍ ଲାଇକ୍ କ୍ଲାଉନସ୍ ।

Digitized by srujanika@gmail.com

ନନ୍ଦୀ ଓ ଭୃଙ୍ଗୀ—ହ୍ୱାଟ୍ କ୍ଲାଉନ୍ ସାର୍ ?

ନନ୍ଦୀ—ନୋ କ୍ଲାଉନ ସାର୍ ! ଉଇ ହଉଚୁ ଓଡ଼ିଶାର ଲଡ଼େଲ-ହାଡ଼ି ସାର୍ । ୟୁ ନୋ ମହାଦେବ ସାର୍ ? Great God of ଥିଏଟର ସାର୍ , ତାଙ୍କ ଡିସାଇପ୍ଲ ନନ୍ଦୀ ଭୃଙ୍ଗୀ ସାର୍ ?

ଷ୍ଟିଭେନ୍‌ସ—ହ୍ୱାଟ୍ ନଣ୍ଡୀ ଭୃଙ୍ଗୀ ? ୟୁ ଆର୍ ନଣ୍ଡୀ ଭୃଙ୍ଗୀ, ହାଃ-ହାଃ, ଗୁଡ୍ ନାଇଟ୍ ନଣ୍ଡୀ ଭୃଙ୍ଗୀ, ଗୁଡ୍ ନାଇଟ୍ ।

[ ଷ୍ଟିଭେନ୍‌ସ ଚାଲିଗଲେ ]

ନନ୍ଦୀ ଓ ଭୃଙ୍ଗୀ—ଗୁଡ଼୍ ନାଇଟ୍ ( ହାତ ଟେକିଲେ )

ନନ୍ଦୀ—ଆରେ, ନାଲି ଚମଡ଼ା ତ ସବୁ ଚାଲି ଯାଇଥିଲେ । ଏ ପୁଣି କୁଆଡ଼ୁ ଅଇଲାଣି ?

ଭୃଙ୍ଗୀ—ଆରେ, ଏଗୁଡ଼ାକଙ୍କର ମନ କଣ ଏ ଦେଶରୁ ସହଜେ ଛାଡ଼ୁଚି ?

[ ଦୁହେଁ ଚାଲିଗଲେ ]



## ତୃତୀୟ ଦୃଶ୍ୟ

[ କୋଇଲା କମ୍ପାନୀ ବଡ଼ବାବୁଙ୍କ ଘର, ବଡ଼ ଅପରିଷ୍କାର-ଅପରିଚ୍ଛନ୍ନ । ସେମିତି କିଛି ଜିନିଷପତ୍ର ନାହିଁ, ଯାହା କିଛି ଅଛି ସେ ବଡ଼ବାବୁଙ୍କ ନିପଟ ଦାରିଦ୍ର୍ୟର ପରିଚୟ ଦିଏ । ଭିତରୁ ଦୁମ୍ ଦାମ୍, ଝୁପ୍ ଝାପ୍ ଝାପଟ ଗୋଳମାଳ ଶୁଣା ଯାଉଛି, ଯହିଁରୁ ଜଣାପଡ଼ିବ ଭିତରେ ଗୁଡ଼ାଏ ପିଲା ଅଛନ୍ତି । ବଡ଼ବାବୁ ଏ କଦର୍ଯ୍ୟ ପରିସ୍ଥିତିରେ ମୁଣ୍ଡା ଗୋଟେ କିଛି ଲେଖାଲେଖିରେ ମନ ଦେଇଛନ୍ତି । ଲେଖାଟା ଯେତେବେଳେ ଭିନ୍ନ ରସ ଦେଇ ଗତି କରୁଛି, ତାର ପ୍ରଭାବଟା ବଡ଼ବାବୁଙ୍କ ମୁହଁରେ ପ୍ରତିଫଳିତ ହେଉଛି । ]

ବଡ଼ବାବୁ—ହେ ପିଲେ, ଗୋଳମାଳ କରନା, ମୁଁ ଗୋଟେ, ମୁଁ ଗୋଟେ ନାଟକ ଲେଖୁଛି ପରା । ( ଖାତାକୁ ଚାହିଁ ) ମନମୋହନ ବାବୁ ତାଙ୍କ ସ୍ତ୍ରୀକୁ ଚାହିଁ ଓ ସାମାନ୍ୟ ହସି—ହେଁ-ହେଁ ( ସାମାନ୍ୟ ହସି ) ତୁମେ ରାଗୁଚ କାହିଁକି ? ତୁମେ ରାଗୁଚ କାହିଁକି ? ଘର କଲେ କଣ ଇମିତି ହୁଏ ନି ? ଯାଅ, ଟିକେ ଚା କରିଆଣ । ମନମୋହନ ବାବୁଙ୍କ ସ୍ତ୍ରୀ, ବେଙ୍ଗୁଆ ମୁହଁରେ ହସ ଦେଖି । ଚା କରିଦେବେ—ଚାକରାଣୀ ରଖିଚନ୍ତି । ମନମୋହନ ବାବୁ ରାଗି ଯାଇ—ଗୋଟେ ତୁଚ୍ଛା ଚଣ୍ଡୀଟେ ।

[ ବଡ଼ବାବୁଙ୍କ ସ୍ତ୍ରୀ ରମା ପ୍ରବେଶ କଲେ, ବେଶଭୂଷା ବଡ଼ବାବୁଙ୍କ ଠାରୁ ଖୁବ୍ ଭଲ । ମାଜିକ, ପାଉଡ଼ର ପ୍ରଭୃତି ଓଡ଼ଶୀ ଗହଣାରେ ପୂର୍ଣ୍ଣ । ]

Digitized by srujanika@gmail.com

ରମା—କିଏ ଚଣ୍ଡୀ ?

ବଡ଼ବାବୁ—( କାଗଜକୁ ଚାହିଁ ଲେଖୁ ଲେଖୁ ) ତୁମେ ଚଣ୍ଡୀ, ଆଉ କିଏ ଚଣ୍ଡୀ !

ରମା—ମୁଁ ଚଣ୍ଡୀ ?

ବଡ଼ବାବୁ—ହଁ, ତୁମେ ଚଣ୍ଡୀ, ତୁମ ଭଉଣୀ ଚଣ୍ଡୀ, ତୁମ ମା ଚଣ୍ଡୀ, ତୁମ ବଂଶ ଚଣ୍ଡୀ, ଏଁ ତୁ ! ତୁ······ମେ !

[ ହଠାତ୍ ରମାକୁ ଚାହିଁ ଚମକିପଡ଼ିଲେ ]

ନାହିଁ, ନାହିଁ ରମା, ଏ ଗୋଟେ ନାଟକ ଲେଖୁଥିଲି ଯେ ସେଇ ନାଟକ ଚଣ୍ଡୀ, ମାନେ ନାଟକରେ ଚଣ୍ଡୀ ।

ରମା—କଣ ନାଟକରେ ଚଣ୍ଡୀ ମ ! ମୋ ଚଉଦ ପୁରୁଷ ଉଦ୍ଧାର ସାରିଲଣି ! ଉଁ-ହୁଁ-ହୁଁ ( କାନ୍ଦିଲା ) ମୋ ଭାଗ୍ୟରେ ପୁଣି ଥିଲା !

ବଡ଼ବାବୁ—ଛି ରମା, ଇମିତ ହୁଅନ୍ତି ! ପିଲେ ସେ ଘରେ ଅଛନ୍ତି ପରା !

ରମା—ପିଲେ ଅଛନ୍ତି ବୋଲି ତୁମେ ମତେ ଗାଳିଦବ ! ଆଁ-ହାଁ-ହାଁ, ମତେ କାହିଁ ମୋ ବାପ ମା ଏ ଅପାଣ୍ଡବା ଘରେ ଦେଲେ !

ବଡ଼ବାବୁ—ଦେଖ ଏ ସାମାନ୍ୟ କଥାରେ ଇମିତ ହୁଅ ନା, ଗୋଟେ ନାଟକ ଲେଖୁଥିଲି ପରା !

ରମା—ନାଟକ ? କଣ ଡାହାଣୀ ଲାଗିଲା ପରି ଗୁଣୁ ଗୁଣୁ ହଉଥିଲ । ମତେ ଦେଖି ଯାବଛ ଗାଳିଦେଇ ସାରିଲଣି, କହୁଚ କଣ ନା ନାଟକ ଲେଖୁଥିଲ ? ଉଁ-ହୁଁ-ହୁଁ ( କାନ୍ଦିଲା )

ବଡ଼ବାବୁ—ହଁ, ସତରେ ମ ରମା, ନାଟକଟେ ଲେଖୁଥିଲି ।

Digitized by srujanika@gmail.com

ରମା—କଅଣ ସେ ନାଟକରୁ ମିଳିବ ? ଏ ଓଦା କାଠରେ ଚୁଲି ଜଳୁନି ଯେ ମୁଁ ଫୁଙ୍କି ଫୁଙ୍କି ଏସନିକା ହେଲିଣି । ସେଥିରେ ମତେ ଟିକେ ସାହାଯ୍ୟ କରିବା କି ପିଲେ ହଗିଲେ ମୁତିଲେ ଦେଖିବା, ତା ନାହିଁ, ନାଟକ ଲେଖାହଉଚି !

ବଡ଼ବାବୁ—ଲେଖୁଚି, ଯଦି କୌଣସି ଥିଏଟର କମ୍ପାନୀ ନେଇଯାନ୍ତି, ତେବେ କିଛି ପଇସା ମିଳିଯିବ ।

ରମା—ଓଃ, ବୋସ୍ତାବୋସ୍ତା ମିଳିଯିବ, ମାସକୁ ଯାହା ତ ଗଣି ଗଣି ଦରମା ମିଳୁଚି ଏ କେଇଟା ଟଙ୍କା, ପୁଣି ସେଥିରୁ ବାରପଣ କୋଡ଼ିମାନ ବାବଦରେ ଯାଉଚି, ଆଉ ନାଟକ ଲେଖାହଉଚି ! ଲାଜ ମାଡ଼ୁନି ସେ ମୁହଁକୁ ? କଏ ତୁମ ନାଟକ ନବ ?

ବଡ଼ବାବୁ—କାହିଁ, ଆମ ଏ ରୂପମହଲ ଥିଏଟର ?

ରମା—ତୁମେ ସେ ଥିଏଟରକୁ ନିବ ? ସେଠି ଏଡ଼େ ଏଡ଼େ ଭୁଆସୁଣୀ ଝିଅଟାମାନ ବାହାରୁଲା ନ ହେଇ ଅଛନ୍ତି । ସେଠିକି ତୁମେ ଯିବ କାହିଁ କରିବାକୁ ?

ବଡ଼ବାବୁ—କାହିଁ, ମୁଁ କାହିଁ ନାଚ କରିବି ? ମୁଁ ବହିଟା ଖାଲି ଦେବିନା !

ରମା—ହୁଁ, ପୁଣି ନୂଆ ମାଇପ କରିବାକୁ ମନ ହେଲାଣି, ନା ? ଗୋଟେ ବାହା ହେଇଚ ଯେ ଖାଇବାକୁ ଦେଇ ପାରୁନ । (କାନ୍ଦ ପକାଇ) କେଡ଼େ ସେବନ୍ତା ଘରର ଝିଅ ମୁଁ । ଦିନେ ଘିଅ ଖାଇ ଦୁଧରେ ହାତ ଧୋଉଥିଲି, ଇଠିକି ଆସି କାମ କରି କରି ମୋ କଣ୍ଠା ଉଠିଲାଣି । ପୁଣି ପର ମାଇପ !

[ରମା କାନ୍ଦିଲା । ଭିତରୁ ପୁଣି ଗୋଳମାଳ ଶୁଣାଗଲା । ]

Digitized by srujanika@gmail.com

ବଡ଼ବାବୁ—ଛି, କି କଥା କହୁଚ ମ ? ଯାଅ, ଦେଖ ପିଲେ କଣ ଗୋଳମାଳ କଲେଣି—

ରମା—କାହିଁ, ତୁମେ ଯାଉନ ? ନଅକିଆ ବାପର ନଅକିଆ ଝିଅ ଖାଇବେ ଖାଇବେ ବୋଲି ମରି ଯାଉଚନ୍ତି ।

ବଡ଼ବାବୁ—(ଦୁଃଖଭରା କଣ୍ଠରେ) ହୁଁ ! ( ଟିକେ ରହି ) ହଇଏ, ସେପେଇ ହେଇନି ?

ରମା—ଆଉ ଗେଲେଇ ହଅ ମ ! ସେପେଇ ! ଇଲେ ନ' ଛଅଣ ଛ ଭଙ୍ଗା କରି ରଖିଚ, ଗେବ ଦେଇ ଗୁଳିଯିବ ! ଦିଅ ସେ କାଗଜ ପୁଳାକ, ଚୁଲି ଲଗୁନି ଲଗୁଆଣୀ ହବ ।

[ ବଳାତ୍କାରେ କାଗଜକୁ ଧଇଲେ ]

ବଡ଼ବାବୁ—ଏଁ, ମୋ ନାଟକ, ମୋ ନାଟକ ! ଥାଉ ରମା, ତୁମେ ତାକୁ ନିଅ ନା । ମୁଁ ଏତେ କଷ୍ଟରେ ନାଟକ ଲେଖିଚି !

ରମା—ମୋର ଲଗୁଆଣୀ ନାହିଁ ନା ମତେ ନାଟକ ଦେଖଉଚନ୍ତି !

[ କାଗଜ ନେଇ ଗୁଳିଗଲେ ]

[ ବଡ଼ବାବୁ ନୈରାଶ୍ୟଭରା ମୁହଁରେ ଗୁହୁଁ ରହିଲେ । ତାପରେ କଣ ଭାବି ପୁଣି ଖଣ୍ଡେ କାଗଜ କାଳି ଓ କଲମ ଧରି ବସିଲେ । ପିଲେ ବହୁ ଗୋଳମାଳ ସହ ଥାଳୀ ଧରି ଆସିଲେ । ନିଜେ ଖଣ୍ଡିଏ ଖଣ୍ଡିଏ ଧରି ବଡ଼ବାବୁଙ୍କୁ ଖଣ୍ଡେ ଥାଳୀ ଦେଲେ ।]

ପ୍ରଥମ ପିଲା—(ଥାଳୀ ବାଡ଼େଇ) ବୋଉ, ଭାତ ଆଣ—

ଦ୍ୱିତୀୟ ପିଲା—(ଥାଳୀ ବାଡ଼େଇ) ବୋଉ, ଭାତ ଆଣ—

Digitized by srujanika@gmail.com

ବଡ଼ବାବୁ—ଅଏ, ହେଲାଣି ସବ ଗଣ୍ଡେ ଅଣ, ପିଲଙ୍କୁ ଭୁବ ଭୋକ କଲାଣି । ମୋର ବ ଅଫିସ୍ ବେଳ ଅସି ହେଇଗଲା ।

[ ସ୍ୱଗ-ତମତମ ହୋଇ ରମା ପ୍ରବେଶ କଲେ ]

ରମା—ଏ କଣ ? ଥାଲୀ ଧରି ବୋଷ୍ଟେ ଧାଡ଼ ପଡ଼ଣ୍ଡି ହେଇ ବସି ଯାଇଚ । ସେଗୁଡ଼ାକ ସାନ ହେଇ ଖେଳୁଚନ୍ତି, ଏ ବଡ଼ ଦ'ଟା ଖାଇବେ ଖାଇବେ ବୋଲି ମରି ଯାଉଚନ୍ତି ! ଦେବା ଧରି ଇଲେ ପାହାରେ ଯେ !

[ ବାଢ଼ ଧରି ପିଲମାନଙ୍କ ଅଡ଼କୁ ଗୋଡ଼େଇ ଗଲେ ଓ ପିଲେ କାନ୍ଦ କାନ୍ଦ ଛଟଭଙ୍ଗ ଦେଲେ । ]

( ବଡବାବୁଙ୍କୁ ଗ୍ଚହିଁ ) କଓ, ସେ ପୁଣି କଣ ?

ବଡ଼ବାବୁ—ଗୋଟେ ଚବ ଅଙ୍କୁଥିଲି ।

ରମା—ଏ ତ ଗୋଟେ କଣ ମାଇକନିଅ ଚବ ହଉଚ । ଅହା ! ସେ ମୁହଁରେ ମା' ଯା ଲାଜହାଡ ବୋଲାଇ ନି, ନାଗରପଣକୁ ତ ପାରୁଡ଼ାପୋକ !

ବଡ଼ବାବୁ—ଗୋଟେ ପତ୍ନୀର ଚବ ଅଙ୍କୁଥିଲି, ଯଦ କାହାର ଦରକାର ହୁଏ—

ରମା—ପତ୍ନୀ ! ଘରେ ତ ଗୋଟେ ଜଳନ୍ତ ପତ୍ନୀ ଅଛି, ତା କଥା ବୁଝି ପାରୁନ । ଅଉ କାଗଜରେ ଗୋଟେ ପତ୍ନୀ ଅଙ୍କା ହଉଚ ।

ବଡ଼ବାବୁ—ହଉ, ଅଫିସବେଳ ହେଇଗଲାଣି, କଣ ଗଣ୍ଡେ ଅଣ ।

ରମା—କଣ ଗଣ୍ଡେ ଅଣିବ ? ନିଅଁ ନା ପାଉଁଶ ? କଷ୍ଟ ହବାକୁ ନାହିଁ । ଏବର୍ଷ ଘରବାଲ ଘର ଛପର କଲନି ଯେ କାଲି ବର୍ଷାରେ ଗୁରୁଅଡ଼ ଓଦା ହେଇଯାଇଚ, ଏବେଣ ପୁଣି ଓଦା କାଠ, ଓଦା ଚୁଲି, ଫୁଙ୍କି ଫୁଙ୍କି ଇଲେ ପାଣି ଡାରୁଚ । ସବ ଇମିତ



Digitized by srujanika@gmail.com

ଭରଭର ସେ ଗୋଡ଼ ଗୁଡ଼ଲରୁ ମୁଠେ ଗେ୍ଟବେଇ ଗରମ ପାଣିରୁ ମୁନ୍ଦେ ପିଇଦେଇ ଯାଅ ।

[ କବାଟରେ ଟିଣ୍ଟିର ବାଡ଼େଇବାର ଶବ୍ଦ ଶୁଣାଗଲା ]

ବଡ଼ବାବୁ—ଏଁ, କିଏ ଡାକୁଚି । ବୋଧହୁଏ ସେ ଥିଏଟର୍ କମ୍ପାନୀର ଲୋକ ଅସିଚି । ଆମର ସେଠି ବନ୍ଧୁ ଦିଆଯାଇଚି କନା । ମୁଁ ଯାଉଚି ।

ରମା—ନ ଖାଇ ଯିବ ?

ବଡ଼ବାବୁ—ଆଉ କଣ କରିବ ? ଡେରି ହେଇଯିବ । ଆଜି ସବ ସାହେବ ଅସିବେ ପୁଣି ଅଫିସ ଦେଖିବାକୁ ।

ରମା—ହଉ ଯାଅ, କିଏ କଣ କରିବ ? ଚୂଲି ତ ଅଠେଁ ଜଳୁନି । ମୁଁ ଫୁଙ୍କି ଫୁଙ୍କି ଏସବିକି ହେଲିଣି । ଅଫିସରେ କଣ ଦିଟା କଣି ଖାଇଦବ ।

ବଡ଼ବାବୁ—( ସ୍ୱଗତଃ ) ଅଫିସରେ କଣି ଖାଇବ ! ( ରମାକୁ ଗୁହିଁ ) ଅଚ୍ଛା ହଉ । ତେବେ ତୁମେ ଯାଅ ପିଲାଙ୍କୁ ଅଗ ଗଣ୍ଡେ ଗଣ୍ଡେ କଣ ଖାଇବାକୁ ଦିଅ । ସେମାନେ ଭୋକରେ ବଡ଼ ଅଉଟି-ପାଉଟି ହେଲେଣି ।

[ ବଡ଼ବାବୁ ବେଶଭୂଷା ହେବାକୁ ଭିତରକୁ ଗୁଲିଗଲେ ]

ରମା—ଅରେ ମଧୁଆ, ସୀତା, କୁନି, କାଣିଆ, ଚମ୍ପୀ—

[ ପ୍ରଥମ ଓ ଦ୍ୱିତୀୟ ପିଲା ଅସି ପହଞ୍ଚିଲେ ]

ପ୍ରଥମ ଓ ଦ୍ୱିତୀୟ ପିଲା—ବୋଉ, ଭୋକ ହେଲାଣି, ଖାଇବାକୁ ଦେ ।

ରମା—ଖାଇବ ଖାଇବ ବୋଲି କେତେ ହଉଚ ବା ? କରେ ବାପା ଅଫିସକୁ ଯାଉଚି, ବାପାକୁ ଅଜ ଥିଏଟର୍ କମ୍ପାନୀରୁ ଟଙ୍କା ମିଳିବ, ଚନାବାଦାମ ଇସ୍କୁଟ ଅଣିବ କହୁନା ?

ପ୍ରଥମ ଓ ଦ୍ୱିତୀୟ ପିଲା—ହଁ ବୋଉ, ଆଜ ନିଶ୍ଚେ କହିବୁ, ବାପା କେତେ ଦିନୁଁ ଆମ ପାଇଁ ବିସ୍କୁଟ ଆଉ ଚିନାବାଦାମ ଆଣିବାକୁ କହୁଚନ୍ତି, ଆଣି ନାହାନ୍ତି ।

[ ପିଲେ ଭିତରକୁ ଚାଲିଗଲେ । ପୁଣି ଝମ୍‌ଝମ୍ ଶବ୍ଦ ଶୁଣାଗଲା ]

ରମା—ଆଏ କୁଆଡ଼େ ଗଲମ, ତମକୁ ପରା କିଏ ଡାକୁଚି । ମୁଁ ପୁଣି ଘରକାମ ଚଳେଇ ଦାଣ୍ଡକାମ ଚଳେଇବି ନା କଣ ?

ବଡ଼ବାବୁ—ନାଇଁ, ନାଇଁ, ମୁଁ ଯାଉଚି, ମୁଁ ଯାଉଚି, କଣ କରିବି, ମତେ କାଇଁ ଜର ଜର ଲାଗୁଚି ।

[ ଚିରାଲୁଗା ଚିରା କମିଜ ପିନ୍ଧି ଖଣ୍ଡେ ଚିରା ଛତା କାଖରେ ଜାକି ବଡ଼ବାବୁ ବାହାରିଲେ । ]

ରମା—ଜର ଜର ଲାଗୁଚି ବୋଲି କହୁଚ, ପୁଣି ଏତେ ବାଟ ଚାଲିଚାଲି ଯିବ ?

ବଡ଼ବାବୁ—ଆଉ କଣ କରିବ ! ଭଙ୍ଗାତୁଟା ହେଇ ସାଇକେଲ ଖଣ୍ଡେ ଥିଲା, ସେ ତ ଗଲା—

[ ପ୍ରଥମ ଓ ଦ୍ୱିତୀୟ ପିଲା ପହଞ୍ଚିଲେ; ରମା ଭିତରକୁ ଗଲେ ]

ପ୍ରଥମ ପିଲା—ବାପା, ମୋ ପାଇଁ ବିସ୍କୁଟ ଆଣିବ ।

ଦ୍ୱିତୀୟ ପିଲା—ବାପା, ମୋ ପାଇଁ ଚିନାବାଦାମ ଆଣିବ । ·

ବଡ଼ବାବୁ—( ବିରକ୍ତ ହୋଇ ) ବିସ୍କୁଟ, ଚିନାବାଦାମ କଣ ହବ ? ଯାଅ ଭାତ ଖାଇବ ।

ପ୍ରଥମ ପିଲା—ଅନେକ ଦିନୁଁ ଆଣିବ ବୋଲି କହୁଚ, ଆଣୁନ ।

ଦ୍ୱିତୀୟ ପିଲା—ବୋଉ କହୁଥିଲା ଆଜ ତୁମକୁ ଟଙ୍କା ମିଳିବ ।

Digitized by srujanika@gmail.com

ବଡ଼ବାବୁ—ଅଚ୍ଛା ଶୁଣିବ, ଶୁଣିବ । ଯାଅ, ବୋଉ ଗ୍ରନ୍ଧୁଛି, ଇଲେ ଖାଇବାକୁ ଦବ । ଯାଅ, ମୋ ସୁନା ପରା !

[ ପିଲେ ଭିତରକୁ ଚାଲିଗଲେ; ରମା ପହଞ୍ଚିଲେ

ରମା—ହଇଓ, ସେଦିନକୁ ପରା କହୁଥିଲ, ମୋ ପେଇଁ ଗୋଟେ ପାଉଡ଼ର ଆଣିବ ବୋଲି, ଖାଲି କାମ କରେଇ ଆସେ—ଆଉ ପାଉଡ଼ରଟେ କି ବାସନା ତେଲଟେ ପେଇଁ କହୁଲେ ସେତେବେଳକୁ ନାହିଁ ।

ବଡ଼ବାବୁ—ତୁମେ ବେସ୍ତ ହ ନା ରମା, ଅଜ ଥିଏଟର କହାଣୀରୁ ଟଙ୍କା ମିଳିଲେ ନିଶ୍ଚେ ଆଣିବ । ହଉ, ମୁଁ ବାହାରିଲି, ତୁମେ ଯାଅ ପିଲାଙ୍କ କଥା ବୁଝ—

[ ବଡ଼ବାବୁ ବାହାରକୁ ଗଲେ । ରମା ଭିତରକୁ ଗଲେ । କିଛି ସମୟପରେ ବଡ଼ବାବୁ ଶେଠଜୀଙ୍କ ସହ ଆସି ପହଞ୍ଚିଲେ । ଶେଠଜୀ ବେଶ୍ ଗୋଲଗାଲ । ମୁହଁରେ ଲମ୍ବା ନିଶ, ମୁଣ୍ଡରେ ଇରଦଆ ଟୋପି, କପାଳରେ ସିନ୍ଦୂରକଲି, ଶେଠଜୀ ହିନ୍ଦୀଢଙ୍ଗରେ ବଙ୍କେଇ କଥା କହୁଲେ]

କଣ କରିବ ଶେଠଜୀ, ବର୍ତ୍ତମାନ ମୋ ଅବସ୍ଥା ଭାରି ଖରାପ, ପଇସାପତ୍ର କିଛି ପାଖରେ ନାହିଁ—

ଶେଠଜୀ—ଅରେ, ପଇସା ନାଥିଲେ ସୁନାରୁପାକା ଜିନିଷପତ୍ର ଯଦି କିଛି ଅଛି, ଦେଇଦଅନା ।

ବଡ଼ବାବୁ—ସୁନାରୁପାର ଅନ୍ୟ କିଛି ଜିନିଷ ତ ନାହିଁ । ଖାଲି ସ୍ତ୍ରୀର ଯେ କେତେଖଣ୍ଡ ଗହଣା—

Digitized by srujanika@gmail.com

ଶେଠଜୀ—ବେଶ୍, ସେଇ ଇସ୍ତ୍ରୀର ଗହଣା ଦେଇଦେନା । ଇସ୍ତ୍ରୀ ହେଇ ଏ ବେଳାରେ ସବଦାଙ୍କୁ ସାହାଯ୍ୟ କରବ ନା ତ ଆଉ କଣ କରବ ?

ବଡ଼ବାବୁ—ନା, ନା, ଶେଠଜୀ, ମୁଁ ତା ପାରିବିନି । ସେ ତା ବାପଘରର ।

ଶେଠଜୀ—ବାପଘରର ହଉ, ମାମୁଁଘରର ହଉ, ଇସ୍ତ୍ରୀ ଯଦି ତୁମର ଅଛି, ସେ ଜିନିଷ ବି ତୁମର—

ବଡ଼ବାବୁ—ମତେ କିଛି ସମୟ ଦିଅ ଶେଠଜୀ ! ମୋର ଥିଏଟରର କମ୍ପାନୀରୁ ଟଙ୍କା ମିଳିବାର ଅଛି, ପାଇଲେ, ମୁଁ ଆପଣଙ୍କର ସବୁ ଧାର୍ ଶୁଝିଦେବି ।

ଶେଠଜୀ—ଆଉ ସେ ଠକାଠକି କାମ ଚଳିବନି, ବଡ଼ବାବୁ ! ଦବ ଦବ ବୋଲି କହି ବହୁତ ଗଡ଼େଇଦେଲ । ତୁମକୁ ଟଙ୍କା ଆଜି ସତେ ଯେ କୌଣସିମତେ ଦବାକୁ ହବ । ନଇଲେ ମୁଁ ତୁମ ଘରେ ଗୁଣ୍ଡା ପୂରେଇଦେବି । ଆମର ଲକ୍ଷ୍ମୀ ଦୋକାନ ଅଛି, ଏତେ ଦିନ ଆମେ ବାକି ରଖିପାରିବା ନା ।

ବଡ଼ବାବୁ—କିନ୍ତୁ.....

ଶେଠଜୀ—ସେ କିନ୍ତୁ ଫିନ୍ତୁ ହାମ୍ ଶୁନ୍‌ନେ ନାହିଁ ମାଗୁଚ, ତୁ ଆମ ଟଙ୍କା ଦେଇ ଦେ ।

ବଡ଼ବାବୁ—କିନ୍ତୁ ସେଗୁଡ଼ାକ ତ ତୁମର ଗୋଡ଼ମିଶା ଗୁଅଲ ଶେଠଜୀ, ଫୋପଡ଼ା ହେଇଥାନ୍ତା—

ଶେଠଜୀ—ଆରେ, ତୁମେ ଅଚ୍ଛା କଥା କହୁଚ, ଆଜିକାଲିକା ମହଙ୍ଗା ବଜାରରେ ଖୁଦକୁ ତ ତର ସହୁନି ଆଉ ଗୁଅଲ ଫୋପାଡ଼ନ୍ତା କିଏ ?

Digitized by srujanika@gmail.com

ବଡ଼ବାବୁ—ହେଲେ ସେ ଗୁଣ୍ଡଳରେ ଯେତେ ଗୋଡ଼—

ଶେଠଜୀ—ତୁମେ ତ ଅଚ୍ଛା ଲୋକ ବଡ଼ବାବୁ । ଭାତ ଖାଇବ, ଗୁଣ୍ଡଳରେ ପୁଣି ଗୋଡ଼ ଅଗାଡ଼ ଖୋଜିବ—

ବଡ଼ବାବୁ—ଭାତ ଖାଇଲେ ତ ଆମେ ତ ମଣିଷ ଶେଠ୍‌ଜୀ ! ତୁମ ଗୋରୁଙ୍କୁ ତୁମେ ଯୁ ଗୁଣ୍ଡଳ ଦବନି—

ଶେଠଜୀ—ଆମେ କଣ କରିବୁ, ଆଜିକାଲି ତ ମଫସଲରୁ ସେଇ ଗୋଡ଼ମିଶା ଗୁଣ୍ଡଳ ବୋମ୍ବବୋଝ ଆସୁଚି—

ବଡ଼ବାବୁ—ଗୋଡ଼ ତ ଆଉ ଗଛରେ ଫଳୁନି, ତାକୁ କିଏ ତ ପୁଣି ମିଶଉଚି ?

ଶେଠଜୀ—ନ ମିଶାଇବେ ବା କାହିଁକି ? ସର୍କାର ରେଟ୍ ବହୁତ କମ୍ ଅଚ୍ଛି । ଯେ ବେପାର କରିବେ ତାଙ୍କର ତ ପୁଣି ଦି' ପଇସା ପାଇବା ଦରକାର । ଆଜିକାଲି ଗୁଣ୍ଡା ଖାଇବାତରେ କେତେ ଦବାକୁ ପଡ଼ୁଚି । ସେ ସବୁ ଅସବ କୁଆଡ଼ୁ ?

ବଡ଼ବାବୁ—ଯା ବୋଲି ଖାଇବା ଜିନିଷରେ ଗୋଡ଼ !

ଶେଠଜୀ—ଅରେ, ତୁମେ ମିଛରେ କାହିଁ ଇମିତ ବକ୍‌ବକ୍ ହଉଚ କହୁଲ ? ଯାର ଏତେ ଭଲ ଗୁଣ୍ଡଳ ଖାଇବାର କଥା, ତାର ନଗଦ ଟଙ୍କା ଦବା ଦରକାର । ବାକିରେ ଖାଇବ, ଅଉ ଗୁଣ୍ଡଳରେ ଦି'ଟା ଗୋଡ଼ ବାହାରିଲା ବୋଲି ତୋଟିରେ ଏକଦମ୍ ଅଟକି ଯାଉଚ । ଦେଲ ମୋର ଟଙ୍କା, ମୁଁ ଯାଏ—

ବଡ଼ବାବୁ—ଟଙ୍କା ତ ନାହିଁ ବୋଲି କହିଲି ।

ଶେଠଜୀ—ସେ ନାହିଁ—ନାହିଁ ଆମେ ଅଉ ଶୁଣିବାନି । ମୁଁ ସାଫ୍ ସାଫ୍ କହୁଚି, କାଲି ସୁଦ୍ଧା ମୋ ଟଙ୍କା ନ ଦେଲେ ମୁଁ ତୁମ

Digitized by srujanika@gmail.com

ଘରେ ଗୁଣ୍ଡା ଭର୍ତ୍ତି କରି ଯା ଜିନିଷପତ୍ର ଥିବ ସବୁ ନେଇ-
ଯିବ । ବୁଝିଲ, ଆଉ ସେତେବେଳେ ଆମ ଦୋଷ ଧରିବ ନା ।

ବାଡ଼ବାବୁ—କଣ କରିବା ଶେଠଜୀ, ଟିକେ ଦୟା କର—

ଶେଠଜୀ—ଦୟାମାୟା କଥା ଆମକୁ କହିବ ନା । ଆମେ ବେବସାୟୀ
ଲୋକ । ଆମର ବ୍ୟବସାୟ ହେଲା ଅସଲ କଥା । ସେଇ
ବେବସାୟକୁ ଚନ୍ଦ୍ରୁଛୁ ବୋଲି ଦେଶରୁ ଲୋଟା କମ୍ବଲ ନେଇ
ଆସିଥିଲୁ, ଇଲେ ହଜାର ହଜାର କାରବାର କରୁଛୁ—

ବଡ଼ବାବୁ—ହଜାର ହଜାର କାରବାର କରି ଆପଣମାନେ ବଡ଼-
ଲୋକ ହେଉଛନ୍ତି । ହେଲେ ଗରିବମାନଙ୍କ ପ୍ରତି ଟିକେ
ଦୟା ଧର୍ମ—

ଶେଠଜୀ—ଦୟାଧର୍ମ କଣ ଆମେ କରୁନୁ ? ଦଶ ହଜାର ଲାଭ କଲେ
ଦଶ ଟଙ୍କା ଗୋଶାଳା ପାଣ୍ଠିକୁ ଦଉନୁ, ତା ବୋଲି ମୂଳ ତ
ଖାଇଯିବା ନା । ଅଚ୍ଛା ବଡ଼ବାବୁ, ମୁଁ ଯାଉଛି । କାଲିକି ଆମ
ଟଙ୍କା ଠିକ ରଖିଥିବ, ନଇଲେ ଫଳ କିନ୍ତୁ ଭଲ ହବ ନା ।

[ ଶେଠ୍‌ଜୀ ଚାଲିଗଲେ । ବଡ଼ବାବୁ ଦୁଃଖରେ
ଘର ଭିତରକୁ ଯାଉଛନ୍ତି, ରମା ପହଞ୍ଚିଲେ । ]

ରମା—କଣ ଟଙ୍କା ମିଳିଲା ?

ବଡ଼ବାବୁ—ନା । ସେ ମାରୱାଡ଼ି ଆସିଥିଲା ତାର ଦୋକାନ
ବାକି ଟଙ୍କା ପାଇଁ ।

[ ଏହି ସମୟରେ ଆସି ପହଞ୍ଚିଲେ ଘରବାଲା
ଜଣେ ଚଢା ମେଜାଜଧାରୀ ବ୍ୟକ୍ତି—ରମା
ତାଙ୍କୁ ଦେଖି ଚାଲିଗଲେ । ]

ଘରବାଲା—ବଡ଼ବାବୁ, ମୁଁ ଘରଭଡ଼ା ଟଙ୍କା ପାଇଁ ଆସିଥିଲି—

Digitized by srujanika@gmail.com

ବଡ଼ବାବୁ—ଟଙ୍କା ତ ଥିଲେ ନାହିଁ ଭାଇ ! ଆଉ ଦିନାକେତେ ଅପେକ୍ଷା କର ।

ଘରବାଲା—ଛ, ଛ ମାସର ଭଡ଼ା ବାକି, ଆଉ କେତେ ଅପେକ୍ଷା କରିବି ? ଶୀଘ୍ର ଟଙ୍କା ଦେଇ ପକାଅ । ନଇଲେ ନାଲିସ ଦାଏର ହବ । ଆଉ ଶୁଣ, ପିଚ୍ଛୁଲା ବର୍ଷରୁ ହିସାବ କରି ଘରଭଡ଼ା ଟ୨୦୯ ଲେଖାଏଁ ଦବାକୁ ପଡ଼ିବ ।

ବଡ଼ବାବୁ—ଏ କଣ କହୁଚ ଭାଇ ! କଚ୍ଚା ଘର, ଚୁଳରେ ସ୍ୱତନ୍ତ୍ର କଣା, ବାନ୍ଧୁ ଚହାଣି ଖାଲି ଖଣ୍ଡିଆଖାବଟ୍ ।

ଘରବାଲା—ଯେତେହେଲେ ଘର ତ ।

ବଡ଼ବାବୁ—ହିଁ ଘର, ହେଲେ ଏଥିରେ ଝିଟିପିଟି ଆଉ ଘୁଷୁରପୋକ ଛଡ଼ା ଆଉ କେହି ରହିବେ ନି—

ଘରବାଲା—ରହିବେ ନି ! ଇଲେ ତୁମେ ଘୁଞ୍ଚିଦିଅ ନା ପାଁଶ ଟଙ୍କା ସଲାମୀ ଦେଇ ମାସକୁ ପଚିଶ ଟଙ୍କା ଭଡ଼ାରେ ନେଇଯିବେ । ମୁଁ ତ ତୁମକୁ ମୋଟେ କୋଡ଼ିଏ ଟଙ୍କା କହୁଚି ।

ବଡ଼ବାବୁ—ହଠାତ୍ ଦଶ ଟଙ୍କାରୁ କୋଡ଼ିଏ ଟଙ୍କା !

ଘରବାଲା—ଇଚ୍ଛା ହେଲେ ରହ, ନଇଲେ ଘୁଞ୍ଚିଦିଅ—

ବଡ଼ବାବୁ—ଘୁଞ୍ଚିଦେଲେ ଆଜିକାଲି ଦିନରେ ମୁଁ ଘର କୁଠୁ ପାଇବି ଭାଇ ?

ଘରବାଲା—ପାଅ ନ ପାଅ, ଅଧିକା ଟଙ୍କା ଦବ ଯଦି ଘରେ ରହ, ନଚେତ୍ ଅନ୍ୟ ବ୍ୟବସ୍ଥା କର—

[ ଘରବାଲା ଚୁଲିଗଲା । ବଡ଼ବାବୁ ବିମର୍ଷ ହୋଇ ଚିନ୍ତା ହୋଇଛନ୍ତି, ରମା ପଶିଥିଲେ । ]

ରମା—କଣ ଟଙ୍କା ମିଳିଲା ?

Digitized by srujanika@gmail.com

ବଡ଼ବାବୁ—କାହିଁ, ମେ ଘରବାଲା ଅସିଥିଲା ଭଡ଼ା ମାଗିବାକୁ—

ରମା—ସକାଳୁ ସଞ୍ଜବେଳଯେ ସେଇଥିରୁ ପୁଞ୍ଜା ପୁଞ୍ଜା ହେଇ ଅସୁଚନ୍ତି । ସେମାନଙ୍କର ଏ୨୦ ଟଙ୍କା ରହିଲାଣି । କୁଆଡ଼ୁ ଶୁଝିବ ଯେ ?

ବଡ଼ବାବୁ—ଅଚ୍ଛା, ରମା ! ଘରେ ପଇସାପଇ ନାହିଁ, କଣ୍ଟ ଦାଅନ୍ତି !

ରମା—ଯୁ ପଇସାପଇ ଗୁଡ଼ାକ ଅଣି ଘରେ ଲଟମେଇ ରଖିଚ ନା ସେଇଥିରୁ କାଢ଼ି ଦେବ ! କାଲଠୁ ଟଙ୍କା ସଇଲାଣି –

ବଡ଼ବାବୁ—ଟଙ୍କା ସଇଲାଣି ? ଅଜ ତ ମୋଟେ ସାତ ତାରିଖ ହେଲା ।

ରମା—ଅଚ୍ଛା, ତୁମେ ପରା କହୁଥିଲ ତୁମ ଦରମା ବଢ଼ିବ ବୋଲି ?

ବଡ଼ବାବୁ—ମେନେଜର ବାବୁ ତ ସବୁବେଳେ କହୁଚନ୍ତି, କନ୍ତୁ କାହିଁ ବଢ଼ୁନି ତ !

ରମା—ସାହାବ ତୁମର ଏତେ ଥର ଅଫିସ ଦେଖିବାକୁ ଅସୁଚନ୍ତି, ତାଙ୍କୁ କହୁନ ?

ବଡ଼ବାବୁ—ତାଙ୍କୁ କହିବାକୁ ସୁବିଧା କୁଠି ମିଳୁଚି ରମା ? ଧନର କୁବେର ସେମାନେ । ସେ କେବଳ ତାଙ୍କ କୁକୁର—କୁକୁଡ଼ା ନେଇ ବେସ୍ତ—

ରମା—ବଡ଼ଲୋକ ସେ, ଯଦି ଦୟା କରନ୍ତେ –

ବଡ଼ବାବୁ—ବଡ଼ଲୋକଙ୍କଠି ଦୟା ! ମରୁଭୂମିରେ ଝରଣା ! ସେମାନଙ୍କର ଯେତେ ଟଙ୍କା ବଢ଼େ ସେତେ ସେ ଗର୍ବବଙ୍କ



Digitized by srujanika@gmail.com

ଡୋଟି ଟପି, ଦୁଃଖୀରଙ୍କୀକି ହଇରାଣ କରି ତାଙ୍କର ପୁଞ୍ଜି ବଢ଼ାଇବାରେ ଲାଗନ୍ତି । ସାହେବ ଆମ ଦରମା ବଢ଼ାଇବେ କଣ, ସେ ଯା' ଭିତରେ ଆମ ଦରମା ବନ୍ଦ କରି ଦେଇଚନ୍ତି ।

ରମା—ଦରମା ବନ୍ଦ କରି ଦେଇଚନ୍ତି ! କାହିଁକି ? କଣ ହେଲା କି ?

ବଡ଼ବାବୁ—ଆମ କାମ ତାଙ୍କ ମନକୁ ପାଉନି ।

ରମା—ମନକୁ ପାଉନି ! ତୁମେ ଖରା ଦେଖି ଅଫିସକୁ ଯାଉଚ, ତାରା ଦେଖି ଘରକୁ ଫେରୁଚ, ଏତେ ବହି ଲେଖୁଚ, ଏତେ ଚିଜ ଅଙ୍କୁଚ, ଆଉ ତୁମକୁ କୋଇଲା କମ୍ପାନୀ କାମ ଚଳେଇ ଆସୁନି ?

ବଡ଼ବାବୁ—ଆମେ ତ ଆମ ପ୍ରାଣପର୍ଯ୍ୟନ୍ତ ଖଟୁଚୁ, ରମା ! କିନ୍ତୁ ସାହେବ ଜମା ସନ୍ତୁଷ୍ଟ ହଉ ନାହାନ୍ତି ।

ରମା—ଆଉ କିଛି ନ ହେଲେ ତ ଆମେ ତାଙ୍କ ଆଶ୍ରିତ । ଆମ ଦୁଃଖରେ ତାଙ୍କର ସାହାଯ୍ୟ କରିବା କଣ ଉଚିତ ନୁହେଁ ?

ବଡ଼ବାବୁ—ଆମ ଦୁଃଖ କଥା ଭାବିବାକୁ ତାଙ୍କର ବେଳ କାହିଁ ରମା ? ନୂଆ ମଟର କିପରି କିଣା ହେବ, କେଉଁ ଦିନ ସିନେମା ଦେଖି ଯିବେ, କେଉଁ ଦିନ ପିକ୍‌ନିକ୍ କରିବେ— ଏଇ ଚିନ୍ତାରେ ସେମାନେ ବ୍ୟସ୍ତ । ଧନୀ ସେ, ତାଙ୍କ ମନ ସବୁବେଳେ ବିଳାସର ଉଚ୍ଚ ପାହାଡ଼ରେ ଘୂରି ବୁଲୁଥାଏ, ଗରିବଙ୍କ ଦୁଃଖର ଧୂଳି ରାସ୍ତାରେ ତାଙ୍କ ଆଖି ପଡ଼ିବ କିପରି ?

[ ହଠାତ୍ କାବୁଲି ପହଞ୍ଚିଲା । ରମା ଘର-ଭିତରକୁ ଚାଲିଗଲେ ]

କିଏ ? (ଚମକି ପଡ଼ି) ଓଃ, ମିଆଁ ସାହେବ !

Digitized by srujanika@gmail.com

କାବୁଲି—କାହିଁ, ଏମିତ ଡରକୁଗିଲ୍ ବଡ଼ବାବୁ ?

ବଡ଼ବାବୁ—ନାହିଁ, ମିଆଁ ସାହେବ ! ମୁଁ ଭାବିଲି ଥିଏଟର କମ୍ପାନୀ ଲୋକ ବୋଲି ।

କାବୁଲି—ଏଁ, କ୍ୟା କହାଲ୍ ? ହମ୍‌କୁ ତୁ ଥିଏଟର ଲୋକ ସମଝିଲ୍ ?

ବଡ଼ବାବୁ—ନାହିଁ, ମିଆଁ ସାହେବ ! ଥିଏଟର କମ୍ପାନୀରୁ ଲୋକ ଆସିବାର ଥିଲା ଯେ—

କାବୁଲି—ଦେଖ୍ ବଡ଼ବାବୁ, ତୁ ହାମ୍ ପୈସା କାହିଁ ଦେଉନା ? ହାମ୍ ଦିଲ୍ଲୀ ଯାଇଚି, ଇଣ୍ଡି ଯାଇଚି, କଲକତା ଯାଇଚି, ବନାରସ ଯାଇଚି, ଲେକିନ୍ ତୋ ସବ ବୁଧୁ କାହିଁ ନାହିଁ ଦେଖୁଚି । ମୋର ରୁପିଆ ତାର ସୁଧ କଲନ୍ତର ବାକି ସାକି ଯୋ କୁଛୁ ଥା କି ସବ୍ ଦେଇଦେ, ଅଭି ଦେଇଦେ, ଅବ ଦେଇଦେ । ନାହିଁ ତ ହାମ୍ ତୁମକୁ କଲେକ୍ଟରୀ କଚେରି, ଅଦାଲତ ପାଚଶୀ, ଜେଲ-ଖାନା, ଇଷ୍ଟେସନ୍, ଦୁକାନ୍, ସିନେମା-ଥିଏଟର, ସବ୍ କୁଛ୍ ଦେଖାଇଦବ । ବୁଝିଲି ? ହାମ୍ ସବ୍ କୁଛ ଦେଖାଇଦବ ।

ବଡ଼ବାବୁ—ଅଭାବ ପଡ଼ଯାଇଚି ମିଆଁ ସାହେବ, କଣ କରିବା ?

କାବୁଲି—କ୍ୟା, କଣ କରିବା ? କ୍ୟା, କଣ କରିବା ? ହାମ୍ ଯୋ ପାଞ୍ଚ ରୁପିଆ ଦେଇଥିଲି ସେ ପାଞ୍ଚ ମଇନାମେଁ ମେଭ୍ ଯିବା ଆସିବା ଖର୍ଚ୍ଚ, ଲେଖାଇ ଦେଖାଇ ରେସ୍ତମ କସମ୍ ଏ ସବ୍ ଲେକର ଏକ ଶ ହୋଗିଆ । ଆଉର ବି ହବ, ଆଉର ବି ହଉଚି । ଶହେରୁ ହଜାର, ହଜାରରୁ ଦଶ ହଜାର, ଦଶ ହଜାରରୁ ଲଖ୍, ଲଖରୁ ଦଶ ଲଖ୍—ଏସା ହୋଇଯିବ । ତୁ ଶହର ଲୋକ ବଡ଼ବାବୁ—ଏତନା ପଇସା କାହାଁସେ ଦବୁ !

ହମ୍ ବଡ଼ ଦୟାଳୁ ଲୋକ୍ ରହ୍ତାଚ, ଇସ୍‌ଲିଏ କହ୍ତାଚ ଏସବ୍ ଫଇସଲା କରଦେ ।

ବଡ଼ବାବୁ—ହଁ, ସବୁ ଫଏସଲା କରଦେବ ମିଆଁ ସାହେବ—ମତେ ଟିକିଏ ସମୟ ଦିଅ ।

କାବୁଲି—ସମୟ, ଫେର୍ ବ ସମୟ ? ଅଚ୍ଛା ବଡ଼ବାବୁ, ତେବେ ମୋର ଖର୍ଚ୍ଚା ବାବଦକୁ କୁଛ୍ ଦେନା ।

ବଡ଼ବାବୁ—କିଛି ନାହିଁ ମିଆଁ ସାହେବ !

କାବୁଲି—ଅରେ ଦେଖ୍‌ନା ଯେ ଅନା, ଦୋଅନା, ପଇସା, ଅଧଲା, ଯୋ କୁଛ୍ ଅଛି ଦେଇଦେନା । ହମ୍ ଏତେ ତକ୍‌ଲିଫ୍ ନେଇ ତୋ ଘର ଆସିଲା ।

ବଡ଼ବାବୁ—କିଛି ନାହିଁ, ମିଆଁ ସାହେବ, କିଛି ନାହିଁ ।

କାବୁଲି—କିଛି ନାହିଁ, କ୍ୟା କିଛି ନାହିଁ ? ଦେଖା ତେରା ପକେଟ ହାମକୁ (ପକେଟ ଦବାଣ୍ଡି), ଅରେ କଣ ଜଣାପାଉଚି, ତୁ ଭାରି ଗୁଲାକ୍ ଅଛୁ ବଡ଼ବାବୁ ! କିଛି ଲୁଗୁଛୁପା ରଖିଦେଇଚୁ, ଆଉ ହାମକୁ ନାହିଁ ନାହିଁ କରୁଚୁ ? ଏ କ୍ୟା, ଏ କ୍ୟା ?

[ ଖଣ୍ଡେ ମୋଡ଼ା କାଗଜ ପାଇ କାବୁଲି ତାକୁ ଖୋଲିଲା ]

ମେଁ ସବ୍ ପକଡ଼ ନେବ, ସବ୍ ପକଡ଼ ନେବ—ହମ୍ ଏଠାର ଅଦମ୍ ନେଇଁ ଯେ ତୁ ମତେ ଠକିଦବୁ—ହାମ୍ କାବୁଲ କାନ୍ଧାହାର ସେ ଅୟା—ଦିଲ୍ଲୀ, କଲକତା ଦେଖା, କେତେନା ଜଜ୍—କଲଟର୍, ହାକିମ୍-ଅଫିସରକା ସାଥ୍ ମିଲି ( ଖଣ୍ଡିଏ ବଡ଼ଟେ କାଗଜରୁ ବାହାରିଲା ), ଅରେ କ୍ୟା ଖଣ୍ଡିଏ ଚିଟ୍ଠା ଏକଠା ରଖିଦିଚୁ, ଅରେ ତୋବା, ତୋବା, କ୍ୟା ହେଁ ଇସ୍କା, କ୍ୟା ହେଁ ଇସ୍କା !                [ ଚିଠି ଫିଙ୍ଗିଦେଲା ]

Digitized by srujanika@gmail.com

ବଡ଼ବାବୁ—ମିଆଁ ସାହେବ ! ଅଜ କିଛି ଟଙ୍କା ଦିଅନା, ବଡ଼ ଅଭାବରେ ପଡ଼ିଛି ।

ଛାବୁଲ—(ହସି) ହାଃ, ହାଃ, ଆଜିର ଦେଶ, ହାମ୍‌କୁ ହସାଇ ଦେଲ । ତୁ ବଡ଼ବାବୁ ହସାଇଦେଲୁ, ଏତେ ଚୁପିୟା ଦେଲି, ଶୁଝିଲୁ ନାଇଁ, ଫେର୍ ଚୁପିୟା ଦବ. ତୁମ୍ କାହାଁସେ ଶୁଝିବ । ହାମେ ଫିର୍ ଦୌଡ଼ ଦୌଡ଼ କେ ଦେଖିବନ୍ ହବ । ନାଲିଶ କରବ, କଚେରି ଘରମେ ଯୋଲୁଛି କାଠ ଚୌକାଠ, ହାରକାନ୍ ମାରକାନ୍ ଅଛି, ସବୁ ନିଲାମ କରିବ ।

ବଡ଼ବାବୁ—ମୋର ଥିଏଟରର କମ୍ପାନୀରୁ ଟଙ୍କା ମିଳିବାର ଅଛି, ମିଳିଲେ ମୁଁ ସବୁ ଶୁଝିଦେବି । ମିଆଁ ସାହେବ ! ମତେ **ଅଜ** ଆଜ କିଛି ଦିଅ । ପିଲାଙ୍କ ପାଇଁ ବସ୍ତୁଟେ ଆଣିବି, ଆଉ ମୁଁ କିଛି ଖାଇବି ।

ଛାବୁଲ—କ୍ୟା ଖାଇବୁ, ନା ହାମ୍ ପଗ୍‌ରୁଛି କ୍ୟା ଖାଇବୁ ? ମେଁ ଦେଖୁଛି, ତୁମ୍ ଲୋକ ଖାଆ ଖାଆକେ ସବ୍ ଉଡ଼ାଇଦେଉଛି । ମୁଁ ପାଞ୍ଚ ଚୁପିୟା ଦେଲି, ତାକୁ ଖାଇଦେଲୁ । ପୁଣି ଚୁପିୟା ଦେବ ତାକୁ ଖାଇଦବୁ । ମୁଁ ଦେଖୁଛି, ତୁ କଣ ଚୌକି, ଟେବୁଲ, ବଲଇ, ଦଅପିଲଇ ସବୁ କିଛୁ ଖାଇଦବୁ, ମୁଁ ଭାବୁଲ ସେ ଦୁଇ ଚୁପିୟା ଲେକେ ଆସିଥିଲୁ । ଅବ ତାକୁ ଦୁଇ ହଜାର କଲୁ, ଲେକିନ୍ ଖାଉଛି କ୍ୟା ? ଏ ଦୁଇ ପଇସାକା ମୁଢ଼ି, ଗୁର ପଇସାକା ଗୁ, ବେଶ୍ ହୋଗିଅ, **ଅଜ** ତୁ କହୁନୁ ଖାଇବୁ, ଖାଇବୁ—

ବଡ଼ବାବୁ—ତୁମେ ମିଆଁ ସାହେବ ଏକଲା ଲୋକ । ଘରଦ୍ୱାରର ଚିନ୍ତା ନାହିଁ, ପିଲାଛିଲାଙ୍କ ଝଞ୍ଜାଳ ନାହିଁ—

Digitized by srujanika@gmail.com

କାବୁଲି—ପିଲାଙ୍କ ହାମ ଦେଶରେ ଅଛି, ଲେକିନ୍ ତାଙ୍କୁ ମହୋବତ୍ ହମେ ଚିଠିରେ ପଠାଇ ଦଉଚି, ମଗର୍ ରୁପିୟା ନାହିଁ ଦଉଚି ।

ବଡ଼ବାବୁ—ନାହିଁ, ମିଆଁସାହେବ ! କିଛି ଦିଅ, ବଡ଼ ଅଭାବ । ଦରମା ବଢ଼ିଲେ, ନାହିଁ ତ ଥିଏଟରରୁ ଟଙ୍କା ମିଳିଲେ କି ଛବି ବିକି ହେଲେ ମୁଁ ସବୁ ଶୁଝିଦେବି ।

କାବୁଲି—ଅଚ୍ଛା, ତୋର ଅଉର କେତେନା ଦରକାର ?

ବଡ଼ବାବୁ—ଅନ୍ତତଃ ପାଞ୍ଚଟଙ୍କା ଦିଅ ।

କାବୁଲି—ଏଁ, ପାଞ୍ଚଟଙ୍କା ! ଏତନା ଟେଙ୍କା ନବୁ, ମୋ ଟେଙ୍କାକୁ ଟଙ୍କା ସମଝିଲ୍ ନା କ୍ୟା ?

ବଡ଼ବାବୁ—ନାହିଁ ପାଞ୍ଚଟଙ୍କା ଦିଅ, ବହୁତ ଦରକାର ।

କାବୁଲି—ଅଚ୍ଛା, ଦବା, ଦବା । ହାମର ଦିଲ୍ ବଡ଼ ଦୟାଳୁ ରହୁଚି । କିସ୍‌କା ଦୁଃଖ ଦେଖିଲେ ଏସା ଏସା ହଉଚି, ଛଟ୍‌ପଟ୍ କରୁଚି । ( ହାତରେ ଦେଖାଇଦେଲା ) ଲେକିନ୍ ତେତେ ପଚିଶ ରୁପିୟାକା ହ୍ୟାଣ୍ଡନୋଟ୍ ଲେଖିଦବାକୁ ପଡ଼ିବ । ହାମ୍ ଏସା ଖରାପ୍ ଲୋକ୍ ନାହିଁ, ଦୋସ୍ତ ବଖତ୍‌କୁ ହାମ୍ ଏତେ ରୁପିୟା ନାହିଁ ନବ । ଲେକିନ୍ ଅବ ତେତେ ଲେଖିଦବାକୁ ପଡ଼ିବ । ଆଜକାଲ୍ କଚେରୀ ଅଦାଲତକା କାନୁନ୍ ବଡ଼ ହେରାନ୍ କରୁଚି । ଅଚ୍ଛା, ନେ ସମ୍ଭାଲ କରିକେ ଇହିଁ ଏକଠୋ ସଇ ଡାଲ ଦେ । ( ପକେଟ୍‌ରୁ କାଢ଼ି କାଗଜ ଦେଖେଇଲା. ବଡ଼ବାବୁ ଦସ୍ତଖତ କଲେ ) ଇହାଁ ଟିପ୍ ଦୋ ( ପକେଟରୁ କାଳି କାଢ଼ି ବଡ଼ବାବୁଙ୍କଠୁ ଟିପ କରେଇ ନେଲା) । ବେଶ୍, ବେଶ୍ ଠିକ୍ ହୋଗିଆ । ଅଚ୍ଛା, ତୁ ପାଞ୍ଚ୍ ରୁପିୟ

Digitized by srujanika@gmail.com

ନବୁ ନା, ଲେକିନ୍ ପଡ଼ୁଲେ ତୋ ଯୁ'ପି ବାବୁଙ୍କୁ ଏକରୁପିୟା ଚଲ୍‌ପିବ, ଅଉର ଏ ଗୁର୍ ରୁପିୟା ନେ ।

ବଡ଼ବାବୁ—( ଟଙ୍କା ନେଇ ) ବହୁତ ଧନ୍ୟବାଦ, ମିଆଁ ସାହେବ ।

କାବୁଲି—ଅଚ୍ଛା ବଡ଼ବାବୁ, ହାମର ଖର୍ଚ୍ଚା ବାବଦ୍‌କୁ ତ କୁଛ୍ ଦେଲ୍ଲନ ? ହାମ୍ ଏତେ ତକ୍‌ଲିପ୍ କଲା, ଏତେ ରୁପିୟା ଦେଲା, କୁଛ୍ ଦେନା ।

ବଡ଼ବାବୁ—ଏଁ, ଖର୍ଚ୍ଚ ବାବଦ୍‌କୁ ? ( ଗୋଟିଏ ଟଙ୍କା ଦେଇ ) ନିଅ, ମିଆଁ ସାହେବ, ଏଇ ଗୋଟିକ ଟଙ୍କା ।

କାବୁଲି—ବେଶ୍, ବେଶ୍, ବଡ଼ବାବୁ ତୁ ବଡ଼ା ଅଚ୍ଛା ଲୋକ, ହାଃ···ହାଃ (ହସି), ବଡ଼ା ଅଚ୍ଛା ଲୋକ !

ବଡ଼ବାବୁ—ମୁଁ ଯାଉଚି ମିଆଁ ସାହେବ ! ଅଫିସ ବେଳ ହେଇଗଲାଣି ।

କାବୁଲି—ହାଁ-ହାଁ, ଯାଓ, ଯାଓ—ଜଲଦି ଯାଓ—

[ ବଡ଼ବାବୁ ଆଗରେ ଗୃହକୁ ଗଲେ, କାବୁଲି ପଛରେ ଗଲା; ଏହି ସମୟରେ ରମା ଆସି ପହଞ୍ଚିଗଲେ । ]

କାବୁଲି—( ରମାକୁ ଦେଖି ) ଏମ୍ ସାହେବ—ହେଁ-ହେଁ, ତୁ ଅଚ୍ଛା ମାଈ ଆଉଚି, କଥା କଉଚି—ଗାନା ଶୁଣୁଚି; ହସୁଚି—ଗୁନ୍ଦ ଦଖୁଚି, ହେଁ-ହେଁ—

ରମା—ହେଁ-ହେଁ, ଯାଉଚି ନା ଇଲେ ଦେଖିବୁ ?

[ ଗୁଞ୍ଜୁଣି ଉଠେଇଲେ ]

କାବୁଲି—ନା, ନା, ଯାଉଚି, ଯାଉଚି, ତୋବା, ତୋବା, ଏଟା ମହା ଇସ୍ତ୍ରୀତ ଇସ୍ତ୍ରୀ ରହୁଚି ।

———

Digitized by srujanika@gmail.com

# ଚତୁର୍ଥ ଦୃଶ୍ୟ

[ ରୂପମହଲ ଲିମିଟେଡ୍‌ର ରଙ୍ଗମଞ୍ଚ—ରିହର୍ସାଲର ଆୟୋଜନ ଚାଲିଥାଏ । ରଙ୍ଗମଞ୍ଚ ଆଲୋକିତ ହେବା ସାଙ୍ଗେ ସାଙ୍ଗେ ଦେଖାଗଲା, ଅଭିନେତାଙ୍କ ମଧ୍ୟରୁ କେତେ ଜଣ ନାଚ ଅଭ୍ୟାସ କରୁଛନ୍ତି । ନାଚ ସରୁ ନ ସରୁଣୁ ନନ୍ଦୀ ବିରକ୍ତ ହୋଇ ପ୍ରବେଶ କଲା । ]

ନନ୍ଦୀ—ଆରେ ବନ୍ଦ କର, କେତେ ନାଚ ଚାଲିଛି । ବନ୍ଧୁ ଠିକ୍ ହବାକୁ ନାହିଁ ନା ଯୁଆଡ଼ର ନାଚ ଉଚ୍ଛୁଳି ପଡୁଛି ।

[ ଅନ୍ୟ ଦିଗରୁ ଭ୍ରୁକୁଟୀ ପ୍ରବେଶ କଲା ]

ଭ୍ରୁକୁଟୀ—କାହିଁକି, ବନ୍ଧୁ ଠିକ୍ ହୋଇଥିଲା ପରା !

ନନ୍ଦୀ—ଯାଃ, ଯାହାକୁ ବନ୍ଧୁ କହନ୍ତି ? ଏଥିରେ ଆମ ଥିଏଟର ଚାଲିବ ?

ଭ୍ରୁକୁଟୀ—କାହିଁ, କଣ ଖରାପ ହେଲା ?

ନନ୍ଦୀ—ଖରାପ ବୋଲି କହୁଚ ! ଏ ତ କମ୍ବଳଯାକ ବାଳ—ପ୍ଲଟ ଠିକ୍ ନାହିଁ, ଡାଏଲଗ ସଜାଡ଼ା ନାହିଁ, ଗୀତ ପାଇଁ ସିଚୁଏସନ୍ ନାହିଁ, ନାଚ ପାଇଁ ସୁବିଧା ନାହିଁ—ମଣିଷ କି ହଇରାଣରେ ପଡ଼ିଲା ! ଅଚ୍ଛା, ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର ବାବୁ କୁଆଡ଼େ ଗଲେ ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଆଜ୍ଞା, ମତେ କଣ କହୁଥିଲେ ?

Digitized by srujanika@gmail.com

ନନ୍ଦୀ—କର୍ତ୍ତା, ତମ ଲେଖକ ବାବୁ କାହାନ୍ତି ?

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଅଜ୍ଞା, ଆସିବାକୁ ତ କଥା ଆସିଥିଲା—

ନନ୍ଦୀ—କଥା ଆସିଥିଲା ! ଅଚ୍ଛା ଲେଖକ ଆଣି ଜୁଟେଇଛ !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଅଜ୍ଞା, ତାଙ୍କ ଦାନ୍ତ ଖରାପ ଥିଲା—

ନନ୍ଦୀ—ଦାନ୍ତ ଖରାପ ବୋଲି ଔଷଧର ବ୍ୟବସ୍ଥା ପାଇଁ ତାଙ୍କୁ ଏଠି ଆଣି ହାଜର କରିଚ, ନା ? ଏଠା ଥିଏଟର କମ୍ପାନୀ ନା ଦାନ୍ତବ୍ୟ ଚିକିତ୍ସାଳୟ ! ଆଜିର ଆକ୍ଟ୍ରେସ୍‌ଙ୍କର ଚେଷ୍ଟା ନାହିଁ, ଲେଖକଙ୍କର ଦେଖା ନାହିଁ, ଆଉ ମୁଁ ପବ୍ଲିକ୍‌କୁ ଯେ ନୂଆ ବହି କେମିତି ଦେବି !

ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ହେଉଛି ତ ଅଜ୍ଞା, ସେ ବାବୁ ଆସିଗଲେଣି ।

ବଡ଼ବାବୁ—(ଥର ଥର) ମତେ କାହିଁକି ଡକେଇଲେ ଅଜ୍ଞା ?

ନନ୍ଦୀ—ଅଚ୍ଛା ଲୋକ ତ ଆପଣ ! ଆମକୁ ନ ପଚାରି ପୁରା ବହିଟା କେମିତି ଲେଖିଦେଲେ ଯେ !

ବଡ଼ବାବୁ—ଆପଣଙ୍କୁ କାହିଁ ପଚାରିଥାନ୍ତି ଅଜ୍ଞା ?

ଭୃକୁଟୀ—କର୍ତ୍ତା, ଥିଏଟର କମ୍ପାନୀର ବିନା ପରାମର୍ଶରେ କୌଣସି ନାଟକ ଆଜିକାଲି କିଏ ଲେଖୁଚି ?

ବଡ଼ବାବୁ—ଅଜ୍ଞା, ସେକ୍ସପିଅର କି ଭଲ ବହି ଲେଖିଯାଇ ଥିଲେ, ତାକୁ ଏବେ ଲୋକେ ଅଭିନୟ କରୁଚନ୍ତି,—ସେକ୍ସପିଅର ତ ଆଉ ଏ ଲୋକଙ୍କୁ ପରାମର୍ଶ କରି ନ ଥିଲେ । ବିଲାତ—

ନନ୍ଦୀ—ବିଲାତ ଫିଲାତ୍ କଥା ଛାଡ଼, ଆମ ଏଇ ଓଡ଼ିଶାରେ ଯାହା ହଉଚି ସେଇଆ କହ । ଅଚ୍ଛା, ଛାଡ଼ନ୍ତୁ ସେ କଥା ଆପଣ



Digitized by srujanika@gmail.com

ବର୍ତ୍ତମାନ ଆମ ଅଫିସର ଆର୍କିଟେକ୍ଟଙ୍କ ସଙ୍ଗେ ପରାମର୍ଶ କରି ବାହୁଟାକୁ ରି-ସାଇଜ୍ କରିଦିଅନ୍ତୁ ।

ବଡ଼ବାବୁ—ରି-ସାଇଜ୍ କରିବ ଆଜ୍ଞା ! ଏଥିରୁ କଣ କିଛି ଚଳିବନି ?

ନନ୍ଦୀ—ନା, କିଛି ଚଳିବନି । ଏ ପ୍ରଫେସନାଲ୍ ଥିଏଟରଟି ! କଣ ଆମେଚର୍ ହୋଇଛି ! ଅଚ୍ଛା ଦେଖନ୍ତୁ ( ନିଜକୁ ଓ ଭୃକୁଟୀକୁ ଦେଖାଇ ), ଆମ ଦୁହିଁଙ୍କ ପାଇଁ ଭଲ ଭଲ ଡାଏଲଗ୍ ଠିକ୍ କରିବେ, ଆମେ ଚମତ୍କାର ହ୍ୟୁମରସ୍ ପାର୍ଟ କରୁ—

ବଡ଼ବାବୁ—ହ୍ୟୁମରସ୍ ପାର୍ଟ ? ମୋ ବାହୁରେ ତ ହ୍ୟୁମର ନାହିଁ ।

ଭୃକୁଟୀ—ଦବାକ୍ ହବନା ! ସେଇଥିପାଇଁ ପରା ଆପଣଙ୍କୁ ଡାକିଲୁଁ । କୌଣସି ଉପାୟରେ ଆମ ଦର୍ଶକଙ୍କୁ ହଲ୍‌କୁ ଆଣିବାକୁ ପଡ଼ିବ ନହେଲେ ବାହୁ କଣ ଆଉ ଚଳିବ ? ଆମେ ହେଲୁଁ ଉପରେକୁର କନା ?

ନନ୍ଦୀ—ଆଉ ଦେଖନ୍ତୁ ବଡ଼ବାବୁ, ଆମ ଦୁହିଁଙ୍କର ଇମିତି ସିନ୍ ଠିକ୍ କରିବେ, ଯେମିତି ଆମେ ସବୁବେଳେ ଖଣ୍ଡେ ଖଣ୍ଡେ ସିଗାରେଟ୍ ପାଟିରେ ଧରି ବାହାରିବୁଁ ।

ଭୃକୁଟୀ—ମୁଁ ଆଜ୍ଞା, ଗୋଟା କେମ୍ପା କଣା କୁଜା ହୋଇ ଅନେକ ଥର ବାହାରିଲିଣି, ଏଥର ବୋବା ( ଭେ, ଭେ—ଅଭିନୟ କରି ) ହୋଇ ବାହାରିବ, ସେଇଆକୁ ଲକ୍ଷ୍ୟ କରି ଲେଖିବେ ।

ନନ୍ଦୀ—ମୋର ତ ଭୁଣ୍ଡ ଟିକେ ଲଟେ, ମୋ ପାଇଁ ଖଣା ପାର୍ଟଟେ ଠିକ୍ କରିଦେବେ—

[ ଭିତରକୁ ଚାଲିଗଲେ ]

Digitized by srujanika@gmail.com

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଚ୍ଚୁହିଂଲ ବଡ଼ବାବୁ, ମତେ ଠିକେ ଓଲଣ୍ଟିମା ଭାଷା ଭଲ ଲାଗେ । ମୋ ପାଇଁ ସେମିତି ହ୍ୱିଷ୍ଟି କାଲ ଷ୍ଟାଇଲ୍‌ରେ ଗୋଟେ କଣ୍ଟୁ—ମାନେ, ଧର ରଣ କର ଅସ୍ତ୍ର—

ଭୃକୁଟୀ—କନ୍ତୁ ଦେଖନ୍ତୁ, କମ୍ପାନୀରେ ଆମମାନଙ୍କ ପୋଜସନ୍ ଦେଖି ବହିରେ ପ୍ରୋମିନେନ୍‌ସ୍ ଦେବେ—

ବଡ଼ବାବୁ—ମାନେ—

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ମାନେ ଡିରେକ୍ଟରଙ୍କୁ ସବୁଠୁ ବେଶୀ ଡାଏଲଗ୍ ଦେବେ । ( ଭୃକୁଟୀଙ୍କୁ ଦେଖାଇ ) ତାପରେ ଆସିଷ୍ଟା ଡିରେକ୍ଟର । ତାପରେ ( ନିଜକୁ ଦେଖାଇ ) ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—

ନନ୍ଦୀ—ଦେଖନ୍ତୁ ଅଜ୍ଞା, ଆମେ ଗୋଟେ ଗୀତ ଠିକ୍ କରିଚୁଁ, ସେଇଥିରେ ବହିଟା ଆରମ୍ଭ କରାଯିବ । ଆପଣ ସେଇଟା ଆଗ ଶୁଣନ୍ତୁ । ତାପରେ ତାକୁ ଲଗେଇ ଡାଏଲଗ୍ ଲେଖିଯିବେ । ଆରେ କୁଆଡ଼େ ଗଲ—ଆରମ୍ଭ କର । ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର ବାବୁ, ତୁମେ ଠିକେ ଲାଇଟ୍ ଏଫେକ୍ଟ ଆଉ ଷ୍ଟେଜ୍ ଆରେଞ୍ଜମେଣ୍ଟ କଥାଟା ଭାବିନିଅ । ଭୃକୁଟୀ ! ତୁ ଏପଟେ ରହ, ମୁଁ ସେପଟେ ଅଛି, ମଝିରେ ମଝିରେ ମୋ ଆଖି ସାଙ୍ଗେ ଆଖି ମିଳେଇବୁ ।

ଭୃକୁଟୀ—ହଁ, ଆମେ ଜମେଇ ଦବାନା ଗୁଡ଼ବା !

ନନ୍ଦୀ—ହୁଁ, ଗୁଲ୍, ରେଡ଼—ଓ୍ୟାନ୍, ଟୁ, ଥ୍ରୀ—

[ ମିସ୍ ଚଞ୍ଚଳା କଳା ଗଗ୍‌ଲସ୍ ଓ ହାଇହିଲ୍ ଜୋତା ପିନ୍ଧି ଆଧୁନିକା ସରସ୍ୱତୀଙ୍କ ବେଶରେ ଟ୍ରେକରେ ବସିଲେ । ତାଙ୍କ ଗୁଡ଼ପଟେ ଅଭିନେତା ଅଭିନେତ୍ରୀ

Digitized by srujanika@gmail.com

ସେଥିରହିଲେ । କ୍ରମାଗତ ଭାବରେ ହୁପ୍ ହୁପ୍
ହୁର୍-ରେ, ହୁପ୍ ହୁପ୍ ହୁର୍ ରେ······
ବନ୍ଦେ ମାତରମ୍···ହରିବୋଲ୍···ହରିବୋଲ୍······
ହରିବୋଲ ଶୁଣାଗଲା । ପରିଶେଷରେ ସ୍ତ୍ରୀମାନଙ୍କ
ହୁଳହୁଳି ପରେ ପରେ ସେଇ ତରଫରୁ ଗୀତ
ଆରମ୍ଭ ହେଲା । ଗୀତ ବନ୍ଦନା ସ୍ତବ ହେଉ ଥିବା
ସମୟରେ ତା ସହିତ ନାଚ ବି ଚାଲିଲା । ]

ସ୍ତ୍ରୀଗଣ—ମାଆରେ ! ରଖ ରଖ ଶୁଭ ବର ଦେ···
ପୀନୋନ୍ନତ ଅବିରତ ରଣ ଗେରସ୍ତ ଶତ୍ରୁ
ଖଡ୍ ଚୁରନ୍ ଦିଅ ମାଗୋ ଖାଶୁଦ୍ଧର-ଗାରଦେ । ୦ ।

ଧମନ୍ତ୍ର—ଯେତେ ଭୂଇଁ ଅନାବାଦୀଆ ଗୋଚର
ଜମିଦାରୀମାନେ, ତେତେ ତ ଗୋଚର
ଚାକୁଣ୍ଡା ଗଜୁର ନ ପାରେ ଲଫାରେ ଯହିଁ
ତହିଁ ଖଲବଲ ଭଲ ଖଣି ହେଉ ଲୋ ଖଣି ଦେ···
ମା ଲୋ ଖଣିଦେ, ହସ ଲହସୁ ସବୁରି ରଖେ,
ମା ଲୋ ଖଣିଦେ । ୧ ।

ଓଁ, ମିସେସ୍ କଷ୍ଟୁପ୍ରିୟା,
Why so ନିର୍ଦ୍ଦୟା

କୋଟିପ୍ରସୂମ୍ବର,—ଲକ୍ଷବର,
ଅଭିକଣ୍ଠେ ବର୍ଷ କରେ ବସୁନ୍ଧର

Mother ହୋଇ ନ ଶୁଣ
ଯେବେ ଏ ନିବେଦନ

Digitized by srujanika@gmail.com

ଅସାର ଦେହ ଜୀବନ

ବସାଦ-ବସ-ସାରଦେ···
ନିବାର କନ୍ଦୁକୁ ଅମେ—ବର ଦେ···
ଅଲବଲୁ ବର ଦେ । ୨ ।

ପୋଛୁ ଅଖି କୋଣ ରେଶମୀ ରୁମାଲେ
ତୋର ଗଗଲସ୍ ଝେଙ୍କ ଥରେ ଗୁହାଁ ମା ସୁନ୍ଦରେ
ତୋର ହାଇ ହିଲ୍ ତଳ ରେଣୁ କଣିକାଏ
ଢାଳଦେ ଅମ ଶିରେ ଦରଦେ···ସାରଦେ···। ୩ ।

ସମସ୍ତେ—(ତାଳି ଦେଇ) ବାଃ, ବାଃ, ଚମତ୍କାର, ଚମତ୍କାର···

ନନ୍ଦୀ—ବଡ଼ବାବୁ, ବଡ଼ବାବୁ, କର୍ତ୍ତ ସେ ଲେଖକ କୁଆଡ଼େ ଗଲେ ?

ଭୃକୁଟୀ—ପଳେଇଲେ ନା କଣ ?

ନନ୍ଦୀ—ଅରେ ଗୁହୁଁଚ କଣ, ଯାଅ ଭିତରେ ଦେଖ ।

[ ଅନ୍ୟମାନେ ଭିତରକୁ ଗଲେ, କେବଳ ଭୃକୁଟୀ ରହିଲା ]
ଅଚ୍ଛା ଲୋକ ସବୁ ଅଣି ଜୁଟେଇଛନ୍ତି ! ଏଗୁଡ଼ାଙ୍କର ତ ମୁଣ୍ଡ ଠିକ୍ ନାହିଁ, ଏ କଣ ବହି ଲେଖିବେ ହେ !

ସବ୍-ଅସିଷ୍ଟାଣ୍ଟ ଡରେକ୍ଟର—( ଫେରିଅସି ) ଅଜ୍ଞା ସେ ତ ଭିତରେ ନାହାନ୍ତି ।

ନନ୍ଦୀ—ଭିତରେ ନାହାନ୍ତି ! ଲୋକଟା ଗୁହୁଁ ଗୁହୁଁ କୁଆଡ଼େ ଅନ୍ତର୍ଦ୍ଧାନ ହେଇଗଲା !

ଭୃକୁଟୀ—ନାହିଁ, ମତେ ଲଗୁଛି ସେ ପଳେଇଲା ।

ନନ୍ଦୀ—ପଳେଇବ ତ, ଏ କଣ କମ୍ କାମ— ପ୍ରଫେସନାଲ୍ ଥିଏଟର ଟି !

Digitized by srujanika@gmail.com

ଶେଠଜୀ—ବଡ଼ବାବୁ, ହାମ ଟାକା ?

ବଡ଼ବାବୁ—ମୋ ଅବସ୍ଥା ତ ଦେଖୁଚ ଶେଠଜୀ !

ଶେଠଜୀ—ଆରେ, ସେ ଅବସ୍ଥା ଫବସ୍ଥା ହାମେ ଜମା ଶୁଣିବାନ, ହାମ ଟାକା ଦେଇଦେ । ଅମର ଲକ୍ଷ୍ମୀ ଦୁକାନ ତୁମ ପୋଗେ ଖିଲାପ ହେଇଯିବ ନା କଣ ?

ବଡ଼ବାବୁ—ଠିକେ ଅନୁଗ୍ରହ କର ଶେଠଜୀ । ଘରେ କଣ୍ଟୁ ନାହିଁ, ପିଲେ କାଲଠୁ ଉପାସ—

ଶେଠଜୀ—ହାମକୁ ସେସବୁ ଶୁଣିବାକୁ ବେଲ ନାହିଁ । ଅମେ ସଉଦା ଦୁକାନ କରିଚ, ଦାତବ୍ୟ ଭଣ୍ଡାର ଖୋଲିନ ।

ବଡ଼ବାବୁ—କଣ କରିବ, ଘରେ ତ କଣ୍ଟୁ ନାହିଁ ।

ଶେଠଜୀ—କଣ କଣ୍ଟୁ ନାହିଁ ? (ରମାକୁ ଚାହିଁ) ଘରେ ତ ଗହଣାଗାଣ୍ଠି ଭଲ ଅଛି ।

ବଡ଼ବାବୁ—(ରମା ଗହଣାକୁ ଚାହିଁ) ନା, ନା, ମତେ ତୁମେ ସେକଥା କହନା ଶେଠଜୀ, ସେକଥା କହନା । ମୁଁ ଏତେ ତଳକୁ ଖସି-ଯାଇ ପାରିବନି, ଏତେ ତଳକୁ ଖସିଯାଇ ପାରିବନି—

ଶେଠଜୀ—କଣ ଏତେ ବାଜେ କଥା ଗପୁଚୁ ମ ? ହାମ ଟାକା ଦେଇଦେ, ନାହିଁ ତ ସେ ବାବତକୁ ଘରେ ଗହଣାଗାଣ୍ଠି ଯାହା ଅଛି ନିକାଲ । ବୁଦ୍ଧିସମର୍ଥି କଥା କହ, ବାହାରେ ଗୁଣ୍ଡା ଅପେକ୍ଷା କରିଚନ୍ତି—

ବଡ଼ବାବୁ—ଓହୋ, ଏତେ ନିଷ୍ଠୁର ତୁମେ । କିନ୍ତୁ ମନେ ରଖ ଶେଠଜୀ, ଏ ଅନ୍ୟାୟ ଚିରଦିନ ରହିବ ନି । ଏ ଦେଶରେ ମଣିଷ ହେଇ ବଞ୍ଚି ରହିବାର ଅଧିକାର ଆମର ବି ଅଛି—

ଶେଠଜୀ—ମଣିଷ ହେଇ ରହିବାର ଅଧିକାର ଥାଇପାରେ, ଲେକିନ୍ ବାକି ଖାଇବାର ଅଧିକାର ନାହିଁ ।

Digitized by srujanika@gmail.com

ପଞ୍ଚମ ଦୃଶ୍ୟ ]                                                    [ ତେୟାଣୀ

ବଡ଼ବାବୁ—ବାକ ପରିଶୋଧ କରିବାକୁ ମୁଁ ତ ମନା କରୁନି । ମୋ ଅବସ୍ଥା ଦେଖୁଚ ! ମଣିଷ ଜୀବନଠୁ ତୁମ ଟଙ୍କାର ମୂଲ୍ୟ କଣ ଏତେ ଅଧିକ ?

ଶେଠଜୀ—ଅରେ, ଏ ତ ଆମକୁ ବେଶ୍ ବୁଦ୍ଧି ଶିଖଉଚ । ମାନୁସିଂହ···

[ ଗୁଣ୍ଡା ସର୍ଦ୍ଦାର ମାନୁସିଂହ ପ୍ରବେଶ କରି ଇଙ୍ଗିତରେ ଠେଙ୍ଗାର ଧମକ ଦେଲା ]

ମାନୁସିଂହ—ହଜୁର—

ଶେଠଜୀ—କଣ ବଡ଼ବାବୁ, ସାଫ୍ ସାଫ୍ କହୁଚ, ଗହଣାତକ ଖୁସିଖୁସିରେ ଦେଇଦେ, ନାହିଁ ତ ଜବରଦସ୍ତି ବାହାର କରିନବାକୁ ମାନୁସିଂହକୁ ହୁକୁମ ଦେବି—

ବଡ଼ବାବୁ—(ପାଗଳ ପରି) ଶେଠଜୀ ! ଯେଉଁ ପଇସା ଆଦାୟ କରିବାକୁ ତୁମେ ଏତେ ଆତୁର ହେଇପଡ଼ିଚ, ସେ ପଇସା ତୁମେ ଜନ୍ମ ହେଲାବେଳେ ସାଙ୍ଗରେ ଆଣି ନ ଥିଲ । ଏଇ ଦେଶର ଧନ—

ଶେଠଜୀ—ସେ ବାଜେ କଥା ଛାଡ଼୍ । ଯଦି ଇଜ୍ଜତକୁ ଭୟ ଅଛି ତେବେ ଗହଣାତକ ଖୁସିରେ ଦେଇଦେ । ଆଉ ଯଦି ପଇସାର ଅଭାବ ପଡ଼ୁଚି, ତେବେ ସ୍ତ୍ରୀକୁ କୁଠି ଗୃହରେ ରଖିଦେ—

ବଡ଼ବାବୁ—(ପାଗଳ ପରି) ଶେଠଜୀ ! ରମା !

[ ରମା ଇଙ୍ଗିତ ବୁଝି ପାରି ଦେହରୁ ଗହଣା କାଢ଼ିଦେଲେ । ଶେଠଜୀ ନେଇ ଚାଲିଗଲେ । ନୀରବ ହୋଇ ବଡ଼ବାବୁ ରହିଥାନ୍ତି । ରମା ଆଉ ହୋଇ ଆଖିରୁ ଲୁହ ପୋଛି ପୋଛି ଭିତରକୁ ଚାଲିଗଲେ । ]

Digitized by srujanika@gmail.com

ଓହୋ, ଓହୋ—

[ ବଡ଼ବାବୁ ଛଟପଟ ହେଲେ; ଏହି ସମୟରେ ଚତୁର୍ଭୁଜ ଆସି ପହଞ୍ଚିଲା ]

ଚତୁର୍ଭୁଜ—କଣ ବଡ଼ବାବୁ, ତୁମେ ଗୁରୁ ଦିନ ହେଲା ଅଫିସ୍‌କୁ କାହିଁ ଯାଉନ ? ମେନେଜର ବାବୁ ପିଙ୍ଗଳା ବେଶ୍ୟା ଘର ରାସ୍ତାରୁ ଘରକୁ, ଘରୁ ରାସ୍ତାକୁ ଇମିତି ହୋଇ ହୋଇ ଶେଷରେ ମରେ ପଠେଇଲେ ।

ବଡ଼ବାବୁ—(ଉଠି) ନା, ନା, ଚତୁର୍ଭୁଜ, ଆଉ ସେ ଅଫିସ୍‌କୁ ଯାଇ-ପାରିବିନି, ମୁଁ ଏଥର ବଡ଼ ଅଫିସ୍‌କୁ ବାହାରିଲି ।

ଚତୁର୍ଭୁଜ—କେଉଁ ବଡ଼ ଅଫିସ୍ ? କୁଆଡ଼େ ସେ ? ମତେ ସେଇଠିକି ଟିକେ ନେଇ ଯାଅନା ବାବୁ ! ମୁଁ ଆଉ ଏ ଛୋଟ ଅଫିସ୍‌ରେ କାମ କରିପାରିବିନି । କୋଇଲା ଉଠେଇ ଉଠେଇ ମୋ ହାତ ବଙ୍କା ହୋଇଗଲାଣି ।

ବଡ଼ବାବୁ—ଓଃ, ଗୋଡ଼ କଣ ହୋଇଗଲା ! ଚତୁର୍ଭୁଜ, ଟିକେ ଚିପିଦେ, ଟିକେ ଚିପିଦେ—

[ ଚତୁର୍ଭୁଜ ଯାଇ ଗୋଡ଼ ଧରି ଚିପିଲା ]

ଚତୁର୍ଭୁଜ—ଏ କଣ ! ଏମିତି ବଙ୍କା କାହିଁ ହୋଇଯାଉଚ ବଡ଼ବାବୁ ?

ବଡ଼ବାବୁ—ଆରେ, ଭାଗ୍ୟ ! ସେଦିନ ରାସ୍ତାରେ ପଡ଼ି ଗୋଡ଼ ଖଣ୍ଡିଆ ହୋଇଗଲା । ଘୋଡ଼ାଗୋବର କୋଉଠୁ ଲାଗି ଶେଷରେ ଧନୁଷ୍ଟଙ୍କାର—

ଚତୁର୍ଭୁଜ—ଏଁ, ତା ମାନେ ମେଣ୍ଢାମୁଣ୍ଡିଆ ବାତ ! ତେବେ ବାବୁ, ସେ ବଡ଼ ଅଫିସ୍ ରାସ୍ତାଟା କଣ ହବ ?

Digitized by srujanika@gmail.com

ବଡ଼ବାବୁ—(ବ୍ୟସ୍ତ ହୋଇ) ମୁଁ କୁ ବଡ଼ ଅଫିସ୍ କଥା କହୁଚ ତୁ ବୁଝିପାରିଲୁନି ଚତୁର ? ଅଜଠୁ ଦୁନିଆର ସବୁ ଦୁଃଖଯନ୍ତ୍ରଣାରୁ ନିସ୍ତାର । ବର୍ତ୍ତମାନ ମୁଁ ଚିର ଶାନ୍ତିର ଅପେକ୍ଷାରେ ରହିଛି । ଖାଲି ଏଇ ନିରଶ୍ରୟ ସ୍ତ୍ରୀ ପିଲଙ୍କ କଥା ମନେ ପଡ଼େ—

ଚତୁର—ଆଉ କୋଉଲି ଅଫିସ୍ କଥା ମନେ ପଡ଼ୁନି, ବାବୁ ?

ବଡ଼ବାବୁ—ଆଉ କି ଅଫିସ୍ ? ବୁଝିଲୁ ଚତୁର, ମୁଁ ଯଦି ହଠାତ୍ ମରିଯାଏଁ, ତୁ ତୋ ବାପୁଆଣୀକୁ ନେଇ ତା ଭାଇଘରେ ଛାଡ଼ି-ଦବୁ । ବଡ଼ଲୋକ ଘର ଝିଅ—ପିଲାଦିନେ ମୁଁ ଭଲ ପଢୁଥିବାରୁ ଦେଖି ବାପା ତାଙ୍କର ସବୁଗରେ ମୋ ସାଙ୍ଗେ ବାହା ଦେଇ-ଥିଲେ । ଭାବିଥିଲେ ଝିଅ ତାଙ୍କର ବେଶ୍ ସୁଖ ପାଇବ, କିନ୍ତୁ ଖୁବ୍ ସୁଖ ପାଇଲା ସେ, ଖୁବ୍ ସୁଖ ପାଇଲା !

[ ଶୋଇପଡ଼ି ଛଟପଟ ହେଲେ ]

ଚତୁର—ଓଃ, ଏମିତି କଣ ହଉଛ ବାବୁ ?

ବଡ଼ବାବୁ—ଆଉଟି ଜୋରରେ ଅଣ୍ଟା ଧର, ଚତୁର, ଆଉଟି ଜୋରରେ । (ଟିକେ ରହି) ହଇରେ, ସେ ପାଇଟେକଲ ଟଙ୍କା ଦେଇନି ହୋଇଛା ?

ଚତୁର—ନାହିଁ, ବାବୁ ! ଦବ ଦବ ବୋଲି କହୁ କହୁ ମତେ ଅନେକ ଦଉଡ଼େଇଲାଣି ।

ବଡ଼ବାବୁ—ହଉ, କିଛି ଡରକର ନାହିଁ । ସେ ଟଙ୍କା ରହିଲା, ସେଥିରେ ଏମାନଙ୍କର ବାଟଖର୍ଚ୍ଚ ଚଳିବ ।

ଚତୁର—ଟିକେ ଥୟ ଧର ବାବୁ ! କଣ ଗୁଡ଼େ ଏମିତି ଗପୁଚ ?

Digitized by srujanika@gmail.com

ବାଡ଼ବାବୁ—ଜୀବନରେ ସେ ଯାଇଥିଲେ ଅନେକ ଉପକାର କରିଛି ।
ହଁ, ଅନେକ ଉପକାର କରିଛି । ଚିଉସନ, ଗ୍ରୁକସି, କେତେ
ଧାଁଧପଡ଼, ଘର ନାଇଁ, ଧନ ନାଇଁ, କହୁ ଧଡ଼ମଡ଼ ମୋର ସେ
ସହିଛି । ଶେଷରେ ଏ ମହାନ୍ ଉପକାରଟା ବି ତାଙ୍କଦ୍ୱାରା
ହବ । ଓଃ, ଅଣ୍ଡା କଣ ହେଇଯାଉଛି, ଚତୁର, ଅଣ୍ଡା କଣ
ହେଇଯାଉଛି !

[ ବ୍ରସ୍ତ ହୋଇ ମେନେଜର ପହଞ୍ଚିଲେ ]

ମେନେଜର—କଉ ଚତୁରାନନ୍ଦ, ବଡ଼ବାବୁ ଦପ୍ତରି ମିଶି ଏଇଠି
ଅଫିସ୍ କରୁଚ ନା କଣ ? ତୁମେ ତ ମଟେ ବଡ଼ ହଇରାଣରେ
ପକାଇଲ । ଆଜି ସାହେବ ଇନ୍‌ସପେକ୍‌ସନ୍‌କୁ ଆସିବେ ପରା !

ଚତୁର—ସାହେବ ତ ନିତ ଇନ୍‌ସପେକ୍‌ସନ୍‌କୁ ଆସୁଚନ୍ତି, ଆଜି
କୁ ନୂଆ ହେଲା ଯେ !

ମେନେଜର—ଚତୁର ! କାହେ, ତୋର ଗ୍ରୁକସିକୁ ଲେଉ ନାହିଁ ନା
କଣ ?

ଚତୁର—ଗ୍ରୁକସି କୁ ଅଛି ଯେ ଲେଉ ହବ ? ଛ ମାସ ଯାଏ ତ
ଦରମା ବନ୍ଦ !

ବାଡ଼ବାବୁ—ଓଃ, ଓଃ, ଓଃ…

[ ଛଟପଟ ହେଲେ । ]

ମେନେଜର—କାହେ, ଦରମା ବନ୍ଦ ବୋଲି କଣ କାମ ବନ୍ଦ ?

ଚତୁର—( ବିରକ୍ତ ହୋଇ ) ତୁମେ କି କଥା କହ ବାବୁ, ତାଙ୍କୁ
ମେଣ୍ଟାମୁଣ୍ଡିଆ ବାତ ଯେ, ସେ ଉଠି ପାରୁ ନାହାନ୍ତି, ଆଉ
ଅଫିସ୍ ଯିବେ କମିତ ?

Digitized by srujanika@gmail.com

ମେନେଜର—କମିତି ଯିବେ ? ସିମିତି ଯିବେ । ବସି ଉଠି ଯିବେ, କି ଚିତ୍କାର କରି ଯିବେ । କରେ, ଅଫିସ୍ ଅଗ ନା ଦାନ ଅଗ ବା ? ଶୀଘ୍ର ଗ୍ଳସ, ମୁଁ କହୁଚ ଶୀଘ୍ର ଗ୍ଳସ ।

[ ମେନେଜର ଗ୍ଳାଉଥିଲେ, ରମା ପହଞ୍ଚିଲେ । ]

ରମା—ଭାଇ, ମୁଁ ଏ ଜାଗାରେ ଆଉ ଚଳି ପାରିବନି । ପିଲାଙ୍କ ପାଇଁ ଖାଇବା ପିଇବାକୁ ନାହିଁ । ତୁମେ ମତେ ଆଜି ନେଇ ଗାଁରେ ଛାଡ଼ିଦେଇ ଆସ ।

ମେନେଜର—କଲେ, ତୁ ସେମିତି ବେସ୍ତ ହଉଚୁ କାହିଁକି ? ତୋର ବଳଳ ସହ୍ୟ ନ ପାରି ଏତେ ବଡ଼ କୋଇଲା କମ୍ପାନୀ ଚ୍ୟାକିଟା ମୁଁ ନରବାବୁଙ୍କୁ ଦେଲି ।

ରମା—(ତାଚ୍ଛଲ୍ୟ ସ୍ୱରରେ) ଯା ଚ୍ୟାକିଟା—

ମେନେଜର—ସେ ଚ୍ୟାକିଟାର ମାହାତ୍ମ୍ୟ ତୁ କଣ ଜାଣିବୁ ? ସେ ଖାଲି ଘଡ଼ିକେ ଗଲା ଘଡ଼ିକେ ରହୁଚ । ସେଥିରେ ପୁଣି ନିତନିତି ଇନ୍‌ସପେକ୍‌ସନ୍ । ଖାଲି ମୋ ପରି ମେନେଜର ବୋଲି—

ରମା—ନାହିଁ, ତୁମେ ମତେ ଆମ ଗାଁରେ ଛାଡ଼ିଦେଇ ଆସ ।

ମେନେଜର—ହଉ, ତୁ ବେସ୍ତ ହ ନା, ଆଜି ଆମ ଅଫିସ ଇନ୍‌ସ୍‌-ପେକ୍‌ସନ୍ ହେଇଯାଉ, ମୁଁ ଆସି ପରେ ସେ କଥା ବୁଝିବି ।

[ ମେନେଜର ଗ୍ଳଗଲେ । ଭିତରୁ 'ବୋଉ, ଖାଇବାକୁ ଦେ' 'ବୋଉ, ଖାଇବାକୁ ଦେ' ପିଲାଙ୍କର ଏ ବଳଳ ଶବ୍ଦ ଶୁଣାଗଲା । ]

ରମା—ଓହୋ, ମୁଁ ଯେ କଣ କରିବ !

[ ବ୍ୟସ୍ତ ହୋଇ ଭିତରକୁ ଗଲେ ]

Digitized by srujanika@gmail.com

ବଡ଼ବାବୁ—ଓହୋ, ଏଣ୍ଟା ଧର ଚତୁର, ଏଣ୍ଟା ଧର । ଆଉଦ
    ଜୋରରେ—

ଚତୁର—ଏବେତ ତ ଜୋରରେ, ଆଉ କଣ କରିବ ?

[ ବଡ଼ବାବୁ ଭଡ଼ ଲେଉଟାଇ ଅନ୍ୟ ପଟକୁ ମୁହଁ
କରି ଶୋଇଥାନ୍ତି, ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର ଓ
ଚଞ୍ଚଳା ପ୍ରବେଶ କଲେ । ]

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ବଡ଼ବାବୁ ଘରେ ଅଛନ୍ତି ?

ଚତୁର—(ଉଠିଆସି) ଅଛନ୍ତି; କିନ୍ତୁ ବେମାରିରେ ।

[ ଦେଖାଇଦେଲା ]

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଏଠି ବସିବା ପାଇଁ କିଛି ଚୌକି
    ଚୌକିର ବନ୍ଦୋବସ୍ତ ନାହିଁ ? ଏ ମିସ୍ ଚଞ୍ଚଳା ଆସିଥିଲେ—

ଚଞ୍ଚଳା—ଜାଗାଟା ଏତେ ଅପରିଷ୍କାର—ଇସ୍ !

ରମା—(ପ୍ରବେଶ କରି) ଜାଗାଟା ଅପରିଷ୍କାର ହଉ ପରିଷ୍କାର ହଉ,
    ଏଠି ବସିବାର ସୁବିଧା ନାହିଁ । ଆମକୁ ତ ଶୋଇବାକୁ ଜାଗା
    ମିଳୁନି, ଆଉ ତୁମ ପାଇଁ ଚୌକି ପକେଇବୁ କୁଆଡ଼ି ?

ସବ୍-ଆସିଷ୍ଟାଣ୍ଟ ଡିରେକ୍ଟର—ଦେଖନ୍ତୁ, ଆପଣ ଯଦି ଆମକୁ ଏପରି
    ଅପମାନ କରିବେ, ଆମେ ଏଠା ଛାଡ଼ି ଚାଲିଯିବୁ—

ଚଞ୍ଚଳା—ଆମେମାନେ ଅବଶ୍ୟ ଆପଣଙ୍କ ସୁବିଧା ପାଇଁ ଆସିଥିଲୁଁ ।

ରମା—ସୁବିଧା ପାଇଁ ତ ସମସ୍ତେ ଆସୁଚ; କିନ୍ତୁ ଅସୁବିଧାର ସୀମା
    ନାହିଁ ।

ଚତୁର—ରହନ୍ତୁ ବାବୁଆଣୀ, ସେମାନେ ବାବୁଙ୍କ ବନ୍ଧୁ ହେଇଥିବେ—
    ଆମ ଏ କୁଲିପାଇଲ ଥିଏଟରର ଲୋକ ।

Digitized by srujanika@gmail.com

ରମା—ସେଇ ଥିଏଟର, ଥିଏଟର । କଣ ସେ ଥିଏଟରରୁ ମିଳୁଚି କେଜାଣି ?

[ ବିରକ୍ତ ହୋଇ ଚାଲିଗଲେ ]

ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର—ବଡ଼ବାବୁ, ବଡ଼ବାବୁ !

ବଡ଼ବାବୁ—ହଁ, (ଆଖି ଖୋଲି) ନମସ୍କାର, ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର ବାବୁ ! କୁଆଡ଼େ ଆସିଲେ ?

ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର—ଆସିଥିଲି ଖଣ୍ଡେ ବହିପାଇଁ ଅଜ୍ଞା—

ବଡ଼ବାବୁ—ଆଜ କି ବହି ଦେବି ? ଆପଣଙ୍କ କର୍ମଚାରୀ ଯୁନିଦେଇ ଗଲା, ସେଥିରେ ତ ମୋର ମାନସିକ ଧ୍ୱଜଭଙ୍ଗ ଘଟିଲାଣି—

ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର—ନା, ମୁଁ ଆମ କର୍ମଚାରୀପାଇଁ ବହି ମାଗୁନି ।

ବଡ଼ବାବୁ—ତେବେ ?

ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର—ଜଣେ ସାହେବ ଆସିଚନ୍ତି ଯେ, ସେ ଚାରିଆଡ଼େ ବୁଲି କାହାଣୀ, ନାଟକ, ଗପ ସଂଗ୍ରହ କରୁଚନ୍ତି । ସେଇ ଆପଣଙ୍କ ବହିଗୁଡ଼ାକର ସିନୋପ୍‌ସିସ୍‌ ମାଗିଚନ୍ତି—

ବଡ଼ବାବୁ—ସାହେବ ଜଣେ ମାଗିଚନ୍ତି ! କିନ୍ତୁ ତୁମ ପାଖରେ ଯୁ ବହି-ଗୁଡ଼ାକ ଥିଲା, ତାର ସିନୋପ୍‌ସିସ୍‌ ଦେଲନି ?

ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର—ସେସବୁ ତ ଦେଇଚି, କିନ୍ତୁ ସେ ଆଉ ମାଗିଚନ୍ତି ।

ବଡ଼ବାବୁ—ଆଉ ମାଗିଚନ୍ତି ? ଅଚ୍ଛା, ସେଇଟି କଣ ପଢ଼ିଚି ଦେଖନ୍ତୁ ।

[ ବଡ଼ବାବୁ ନିସ୍ତେଜ ହୋଇ ପଡ଼ିଗଲେ । ସବ୍‌-ଆସିଷ୍ଟାଣ୍ଟ ଡିରେକ୍‌ଟର ଓ ଚଞ୍ଚଳା ପାଖରେ ପଡ଼ି-ଥିବା ଅଳମାଳ ଭିତରୁ ଗୁଡ଼ାଏ କାଗଜ ଧରିଲେ । ]



Digitized by srujanika@gmail.com

ଚଞ୍ଚଳା ଓ ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର—ଆମେ ଆସୁନୁ ଅଜ୍ଞା, ନମସ୍କାର—
ବଡ଼ବାବୁ—ନମସ୍କାର ।

[ ଚଞ୍ଚଳା ଓ ସବ୍-ଅସିଷ୍ଟାଣ୍ଟ ଡିରେକ୍ଟର ଚାଲିଗଲେ ]

ଚତୁର୍—(ସ୍ୱଗତ) ପଇସାଟିଏ ଦବାକୁ ନାହାନ୍ତି, ଥରକୁ ଥର ଆସି ଫୁଲା ଫୁଲା ଲେଖା ଧରି ଚଲ୍ ଭାଇ ମଦନଗୋପାଳ—

ବଡ଼ବାବୁ—ଓହୋ, ଚତୁର୍, ଗୋଡ଼ ଧର, •ଗୋଡ଼ ଧର—ଓହୋ, ଟିକେ ପାଣି, ଟିକେ ପାଣି—

[ ଚତୁର୍ ପାଣି ଦେଲା । ହଠାତ୍ କାବୁଲି ପହଞ୍ଚିଲା ]

କାବୁଲି—ଆରେ ବଡ଼ାବାବୁ ତୁମ୍ ଘର୍‌ମେଁ ? ହାମ ତ ଇଧର ଉଧର, ଘର୍ ବାହାର ବହୁତ କୁଛ ଧୁଣ୍ଡିଲା—ଦେଖୋ ! ହାମ୍ ହାମରା ରୁପିୟା ଏସା ନେଇଁ ଛାଡ଼ବ । ହାମରା ନାମ କାଦର ମିଆଁ, ହାଁ, କାଦର ମିଆଁ । ହାମ୍ କେତେ ଜଜ୍ କଲଟର୍, ଓକିଲ, ବାହାଦର୍, ରାଜା ମହାରାଜ ଦେଖା ।

ଚତୁର୍—ବଡ଼ବାବୁ ବଡ଼ ବେମାର, ମିଆଁ ସାହେବ !

କାବୁଲି—କ୍ୟା ବେମାର ? ବଡ଼ା ବେମାର ? କ୍ୟା ହାମରା ରୁପିୟାକୁ ବେମାର ହୋଇଯିବ ନା କ୍ୟା ? ହେ ବଡ଼ାବାବୁ—ହାମରା ପଇସା ଜଲଦି ଦେ । ହାମ୍ ବହୁତ ଠକେଇଲା । ଆଉର୍ ନେଇଁ ଠକାଇବ । (ସ୍ୱଗତ) ଆଦ୍‌ମି ମରିଯିବ ତ ହାମ୍ କାହାଁସେ ରୁପିୟା ପାଇବ ?

ଚତୁର୍—ମିଆଁ ସାହେବ ! ଟିକେ ଦୟା କର, ବଡ଼ ଗରିବ ଲୋକ ।

କାବୁଲି—ଅଉର୍ ହାମ୍ କ୍ୟା ଅମିର ? ଏ ତ ଅଚ୍ଛା କହୁଚ । ହାମ୍ ଦୋ ରୁପିୟାକୁ ଦୋ ହଜାର ବନାୟା । କେତନା ଦୁଃଖସେ ଅପ୍ ଜାଣିବୁ ?

Digitized by srujanika@gmail.com

ଚତୁର—ସେ ଭଲ ହେଇଗଲେ ଆପଣଙ୍କ ଟଙ୍କା ଦେବେନି—ଆଉ କିଛି ଦିନ ସବୁର୍ କର ।

କାବୁଲ—କ୍ୟା ସବୁର୍ କରବ ! ସବୁର୍ କର୍ କର୍‌କେ ତ ବେମାର ହେଇଗଲା । ଅଉ ଆଦ୍‌ମି ମଲେ କ୍ୟା ହାମକୁ ରୁପିୟା ମିଳବ ? ହାମ୍‌କୁ ତ ଆଜ ରୁପିୟା ଲେନା ହୈ—ଅଉର୍ ହାମ୍ ଆଜ ବ ରୁପିୟା ଲେଗା । କ୍ୟା ବଡ଼ାବାବୁ, ଦୋ ହାମରି ପଇସା ଜଲଦି ଦୋ—

ବଡ଼ବାବୁ—ପଇସା କୁଠୁ ପାଇବ, ମିଆଁ ସାହେବ ?

କାବୁଲ—ହମ୍ ଦେଖୁଚି ତୁମ୍ ଏସା ନାହିଁ ଦବ । ତବ୍ ତୁମରି ଘରମେଁ ଯୋ କୁଛ୍ ଜିନିଷ ଅଛି, ସବ୍ ହାମ୍ କୋରଖ କରି ନେଇଯିବ ।

[ କାବୁଲ୍ ଭିତରେ ପଶି ଘଣ୍ଟୁଣୀ, ଖଡ଼ିକା, ଥାଳୀ ଗୋଟି ଗୋଟି କରି ଆଣି ରଖିଲା, ଏଇ ସମୟରେ ନନ୍ଦୀ ଭୃଙ୍ଗୁଟୀ ଆସି ପହଞ୍ଚିଲେ । ]

ନନ୍ଦୀ—କିଓ ବଡ଼ବାବୁ, ତୁମେ ଶୋଇଚ କଣ ? ତୁମେ ଗଲେ ପରି ବହୁତ ଦେଖା ହବ—

ଭୃଙ୍ଗୁଟୀ—ଟିକେ ଶୀଘ୍ର ଆସ ନା, ଆମକୁ ପହିଲକୁ ନୂଆ ବହି ଦବାକୁ ହବଟି ! ଓଃ, କି ମୁସ୍କିଲ୍—

ଚତୁର—ଖାଲି କାମବେଳକୁ ସମସ୍ତେ; ଅଉ ପଇସାଟିଏ ବାହାର କର, ସେତେବେଳକୁ କେହି ନାହିଁ । ଲୋକଟା ରୋଗରେ ପଡ଼ିଚି ସେ ଔଷଧ ପାଇଁ ଅଧଲେ ନାହିଁ, ଆସିଲେ ଅମ ଗୁରୁଗୋସେଇଁ, କହିଲେ କଣ ନା ଜଲଦି ଅସ—

ନନ୍ଦୀ—ହେ, ତୁ ସିମିତି କଣ ହୁଙ୍କୁଚୁ ?

Digitized by srujanika@gmail.com

ଭ୍ରୂକୁଟୀ—ଆମକୁ ପୁଣି ଚିହ୍ନିନ୍ତୁ କି ?

ଚତୁର—ଯା ବେ, ସେ ଲକ୍ଷ୍ମୁର ଉଡ଼ଙ୍ଗ ଆଉ ଚତୁର ଆଗେ ଦେଖାନା ।

ନନ୍ଦୀ—ହେ, ମୁଁ ସାବଧାନ କରେଇଦଉଛି, ମୁହଁ ସମ୍ଭାଳି କଥା କହ—

ଭ୍ରୂକୁଟୀ—ନଇଲେ ତୁମର ଆମର ଏଠି ଲଗିଯିବ ହାତାହାତ ।

ଚତୁର—ଅଜ, ମତେ ସେ ଧମକ ଦେଖା ନା, କୋଇଲା ଉଠେଇ ଉଠେଇ ମୋ ଦେହରେ ମସଲ୍ ହେଇଯାଇଛି ଟି ! ଦେବ ଦହକି ନାଥେ ନାଥେ ଯେ···

[ ଚତୁର ମାରିବାକୁ ଗୋଡ଼ାଇଲା, ନନ୍ଦୀ ଓ ଭ୍ରୂକୁଟୀ ବ୍ୟତିବ୍ୟସ୍ତ ହୋଇ ଗୁଳିଗଲେ । ]

ବଡ଼ବାବୁ—ଓହୋ, ମରିଗଲି ମରିଗଲି, ପାଣି, ଚତୁର, ଚତୁର, ପାଣି—
[ ଚିତ୍କାର କଲେ ]

ଘରବାଲା—(ପ୍ରବେଶ କରି) ବଡ଼ବାବୁ ! ବଡ଼ବାବୁ !

ଚତୁର—ତାଙ୍କ ଦେହ ଖରାପ ଭାଇ !

ଘରବାଲା—ଦେହ ଖରାପ ଭଲ କଥା ମୁଁ ବୁଝିବାକୁ ଆସିନି—ମୋ ଭଡ଼ା ଟଙ୍କା ?

ଚତୁର—ଟଙ୍କା ଇଲେ ସେ କୁଠୁ ପାଇବେ ? ପାଖରେ ତାଙ୍କର ତ ଔଷଧଖର୍ଚ୍ଚକୁ ପଇସାଟିଏ ନାହିଁ ।

ଘରବାଲା—ପଇସା ଯଦି ନାହିଁ, ପରଘରେ ଅଛନ୍ତି କାହିଁକି ? ମୁଁ ଏତେ କଥା ଶୁଣିବି ନି । ମୋ ଟଙ୍କା ଦେଇଦଅନ୍ତୁ, ନଇଲେ ଘର ଛାଡ଼ନ୍ତୁ—ବଡ଼ବାବୁ ! ବଡ଼ବାବୁ !

Digitized by srujanika@gmail.com

ବଡ଼ବାବୁ—( ବନ୍ଧୁ କଣ୍ଠରେ ) କଣ କହୁଚ ଭାଇ !

ଘରବାଲ—ସେ ଭାଇ ସମ୍ବନ୍ଧ ଯୋଡ଼ି ଭଲାଭଲି କରିବା ଆଶା ଛାଡ଼ । ମୋ ଭଡ଼ା ଟଙ୍କା ବାହାର କଲ ?

ବଡ଼ବାବୁ—ଆଉ କିଛି ଦିନ ସବୁର୍ କର ଭାଇ !

ଘରବାଲ—ବର୍ଷ ବର୍ଷ ଧରି ଘରେ ରହିଲଣି, ଭଡ଼ା ଦେଖା ନାହିଁ—

ବଡ଼ବାବୁ—ଏକଥା କାହିଁ କହୁଚ ଭାଇ ! ମୁଁ ତ ତୁମ ଆଗ ଭଡ଼ା ସବୁ ଦେଇଦେଇଚି, ବାକି ଏ କେତଟା ମାସର—

ଘରବାଲ—ସେ ପିନା ଦଶ ଟଙ୍କା ହିସାବରେ ଦେଇଚ, ବାକି ଟଙ୍କା ? ମୁଁ ତ କହିଦେଇଚି କୋଡ଼ିଏ ଟଙ୍କା ଲେଖାଏଁ—

ଚତୁର—ଏଇ ଘରକୁ କୋଡ଼ିଏ ଟଙ୍କା ଲେଖାଏଁ ଭଡ଼ା ? ସେ ପୁଣି ପିଛିଲ ବର୍ଷରୁ ?

ଘରବାଲ—ଆରେ, ରଖ୍ ସେ ଛନ୍ଦାବାଜି । ପରଘରେ ଅନେକ ଲୋକଙ୍କୁ ମାମଲତ୍ କାର କରାଇ ଆସେ । କୋଡ଼ିଏ ଟଙ୍କା ବେଶୀ ହୋଇଗଲା ! ସିମେଣ୍ଟ ଦର କେତେ ? କଡ଼ା, ବାଉଁଶ ଦାମ୍ କେତେ ?

ଚତୁର—ଏ ଘରେ ସିମେଣ୍ଟ କାହିଁ ? କଡ଼ା ବାଉଁଶ କାହିଁ ?

ଘରବାଲ—ଇଲେ ନ ଥିଲେ କେବେ ତ ଥିଲା ! ଛାଡ଼ ସେ ବାଜେ କଥା । ହଁ, ବଡ଼ବାବୁ, ମୋ ଟଙ୍କା ଦେଲ—

ବଡ଼ବାବୁ—ଟଙ୍କା ତ ଇଲେ ନାହିଁ ଭାଇ !

ଘରବାଲ—ଟଙ୍କା ଯଦି ନାହିଁ, ବାହାର ମୋ ଘରୁ, ଇଲଦି ବାହାର !

ବଡ଼ବାବୁ—ଏ ଅବସ୍ଥାରେ ମୁଁ କୁଆଡ଼େ ଯିବି ଭାଇ ?

Digitized by srujanika@gmail.com

ଘରବାଲା—ଯୁଆଡ଼େ ଇଚ୍ଛା ସିଆଡ଼େ ଯା । ତୁମେ ବାହାରିଗଲେ ମୋ ଘର ମରାମତ ହବ—

ଚତୁର—କର୍ତ୍ତା, କମିତ ଅବୁଝା ଲୋକ ତୁମେ ! ଦେଖୁଚ ହାଡ ଖରାପ ହେଇଚ—

ଘରବାଲା—ହାଡ ଖରାପ ହେଲେ ମେଲା ରାସ୍ତାରେ ବେଶ୍ ଖୋଲା ପବନ ମିଳିବ । ବାହାର କହୁଚି, ଜଲଦି ବାହାର, ଉଠ, ଉଠ—

[ ବଡ଼ବାବୁଙ୍କ ହାତ ଧରି ହିଙ୍କାହିଙ୍କି କଲେ ]

ବଡ଼ବାବୁ—ମୁଁ କଣ କରିବ ? ମୋ ଗୋଡ଼ହାତ ତ ମୋତେ ଚଲୁନି ଭାଇ !

ଘରବାଲା—ନା, ମୁଁ ସେ କଥା ଆଦୌ ଶୁଣିବନି । ତୁମେ ଶୀଘ୍ର ଏଠୁ ବାହାର ! ଅଚ୍ଛା, ତୁମେ ଯିବନି, ନା ? ଆରେ, କିଏ ଅଛ ରେ, ଭାଙ୍ଗିବଟି ଏ ଘର—

ଚତୁର—ଏଁ, ଘର ଭାଙ୍ଗିବ ?

ଘରବାଲା—ହଁ, ଘର ଭଙ୍ଗା ହେଲେ ନୂଆ ତିଆରି ହବ ।

[ ଘରବାଲା ଚାଟି ଭରି ଘରଭିତରେ ପଶିଲା । ବଡ଼ବାବୁ ଚୁପ୍ ହୋଇ ଶୋଇଥାନ୍ତି । କାବୁଲି ମୁଣ୍ଡରେ ଗୋଟେ ବାଲ୍ଟି, ହାତରେ ଗୋଟେ ଛଅଁୁଣୀ ଧରିଥାଏ । ଷ୍ଟିଭେନ୍‌ସ ପ୍ରବେଶ କଲେ । ପୂର୍ବପରି ହାତରେ ବ୍ୟାଗ୍, ପାଟିରେ ପାଇପ୍ । ]

ଷ୍ଟିଭେନ୍‌ସ—Is this Bada Babu's House ? ମାନେ, ଏ କ୍ୟା ବଡ଼ାବାବୁକା ମୁକାମ୍ ?

Digitized by srujanika@gmail.com

ଚତୁର—ହଁ, ଆଜ୍ଞା !

ଷ୍ଟିଭେନ୍‌ସ—Who is this man sleeping ? ଯେ କୌନ୍ ସ୍ଲିପ୍ କରତେଛି ?

ଚତୁର—ସେ ଆମ ବଡ଼ବାବୁ ଆଜ୍ଞା ! ଉପ୍ନାନଙ୍କ ବେମାର ।

ଷ୍ଟିଭେନ୍‌ସ—ଏଁ, ବେମାର ? ମାନେ Illness ! What sort of illness ? ମାନେ, କ୍ୟା ବେମାର୍ ହୁଆ ?

ଚତୁର—ମେଣ୍ଢାମୁଣ୍ଡିଆ ଆଜ୍ଞା, ମେଣ୍ଢାମୁଣ୍ଡିଆ ।

ଷ୍ଟିଭେନ୍‌ସ—ମେଣ୍ଢାମୁଣ୍ଡିଆ ? ମାନେ, Ram's head ? ଏ କ୍ୟା ବେମାର୍ ହୈ ?

ଚତୁର—ଧନୁଷ୍ଟଙ୍କାର ଆଜ୍ଞା, ଧନୁଷ୍ଟଙ୍କାର ।

ଷ୍ଟିଭେନ୍‌ସ—What Dhanustankar ? ମାନେ ବୋ-ଟଙ୍କାର ?

କାବୁଲି—ଟିଟାନସ୍ ସର୍କାର !

ଷ୍ଟିଭେନ୍‌ସ—Titanus ! Very dangerous, why don't you call a doctor ? ତୁମ୍ ଡକ୍ଟର ନେହିଁ ଲାତା କାହେ ?

ଚତୁର—ଭାରି ଗରିବ ଲୋକ ଆଜ୍ଞା ! ଘରେ ଖାଇବାକୁ ନାହିଁ ।

କାବୁଲି—ହାଁ ହଜୁର, ଓ ବହୁତ ଗରିବ । ହମସେ ବହୁତ ରୁପିୟା ଲେଇଛି ।

ଷ୍ଟିଭେନ୍‌ସ—ଉଧାର୍ ରୁପିୟା ଲେଇଛି । How much ? ମାନେ କେତନା ରୁପିୟା ଲିଆହେ ?

କାବୁଲି—ଦେଢ଼ ଶ ହଜୁର !

ଷ୍ଟିଭେନ୍‌ସ—ଅଚ୍ଛା, You take this—ମାନେ ଏ ରୁପିୟା ଲଓ ।

କାବୁଲି—ବହୁତ ଅଚ୍ଛା ହଜୁର୍ !

[ଟଙ୍କା ନେଇ ପୁଣି ଜନାଙ୍କ ମୁଣ୍ଡ ଅଥିଲା, ଚତୁର ଧମକ ଦେଲା ।]

Digitized by srujanika@gmail.com

ଚତୁର—କାରେ ବଡ଼ବାବୁ ଟଙ୍କା ଦେଇ ଦେବାକୁ ଧଇଲଣି, ପୁଣି କାମକୁ ଉଠାଉଛନ୍ତି ?

[ କାବୁଲି ଜିନିଷ ଥୋଇଦେଇ ସଶଙ୍କଭାବରେ ଚାଲିଗଲା ]

ଘରବାଲା—(ପ୍ରବେଶ କରି) ଆଜ୍ଞା, ମୋର ବି ଘରଭଡ଼ା ବାବତକୁ ଅନେକ ଟଙ୍କା ଯାଙ୍କ ଉପରେ ବାକି ଅଛି ।

ଷ୍ଟିଭେନ୍‌ସ—ଅନେକ ଟାକା ବାକି ଅଛି ? How much ? କେତେ

ଘରବାଲା—ଶହେ ଟଙ୍କା ଅଜ୍ଞା !

ଷ୍ଟିଭେନ୍‌ସ—ଶହେ ଟାକା ? ଆଚ୍ଛା, Take this money,—ତୁମେ ଏ ଟାକା ନିଅ ।

[ ଷ୍ଟିଭେନ୍‌ସ ଟଙ୍କା ଦେଲେ, ଘରବାଲା ମନଖୁସିରେ ତାହା ଧରି ଚତୁରକୁ ଚାହିଁ ଚାହିଁ ଚାଲିଗଲା ]

ଚତୁର—(ବିବ୍ରତ ହୋଇ) ଆଜ୍ଞା, ଆପଣ କଣ, ଆମେ ତ ଚଳିପାରୁନୁ

ଷ୍ଟିଭେନ୍‌ସ—ହାମେ ହଲିଡେ୍‌ସେ ଆସିଚେ । ତୁମ୍‌ର ବଡ଼ବାବୁକା ରାଇଟିଂ ହାମ୍ ଭେରି ପସନ୍ଦ କରୁଚି । ପିପୁଲକା ଫ୍ରଷ୍ଟ୍ରେସନ (frustration), ମାନେ ଅଦ୍‌ମିକା ଦୁଃଖ ଯନ୍ତ୍ରଣା ଲେକେ ଲେଖା, ଭେରି Up-to-date, ମାନେ ଖୁବ୍ ଅଧୁନିକ୍ । ଅଚ୍ଛା, I gave some money for Bada Babu through what that Sub-Assistant Director of Rupmahal. ହାମେ ସେ ରୂପମହଲ ସବ୍-ଅସିଷ୍ଟାଣ୍ଟ ଡିରେକ୍‌ଟର ହାତ୍‌ମେ ବଡ଼ାବାବୁ ପାଇଁ ଟଙ୍କା ଦେଇଥିଲା ।

ଚତୁର—ଆପଣ ବଡ଼ବାବୁଙ୍କପାଇଁ ଟଙ୍କା ଦେଇଥିଲେ ? ସେ ତ ଦେଇ ନାହାନ୍ତି ଅଜ୍ଞା ! (ସ୍ୱଗତ) ଅରେ, ସବୁବେଳେ ବଡ଼ ବଡ଼ ହଉଚନ୍ତି, ଅଉ ଯା ପାଉଚନ୍ତି ନିଜେ ପକେଇ ଦଉଚନ୍ତି !

Digitized by srujanika@gmail.com

ଷ୍ଟିଭେନ୍ସ—ନିଜେ ପକାଇ ଉଝେଚନ୍ତ୍ର, ଅଠା ! I want to give some more money. ଡାମ୍ ଓସ୍‌କୁ ଅଡର୍ କୁଛ୍ ରୁପିୟା ଦେନେ ମାଙ୍ଗ୍‌ତେ ।

ଚତୁର—ମତେ ଦଅନ୍ତୁ ଆଜ୍ଞା, ମୁଁ ତାଙ୍କ ଅଫିସ୍ ନପରଣି ।

ମେନେଜର—(ପ୍ରବେଶ କରି) ମତେ ଦଅନ୍ତୁ ଆଜ୍ଞା, ମୁଁ ତାଙ୍କ ଅଫିସ୍ ମେନେଜର, ଆଉ ଲେଖାଯୋଖାରେ ଶଳା ।

ଷ୍ଟିଭେନ୍ସ—ଏଁ, What you are, his Shala ? ମାନେ brother-in-law ! ଅଚ୍ଛା, ମିଃ ଶାଲା, ତୁମେ ଏ ରୁପିୟା ରଖେ ଅଉର୍ ବଡ଼ାବାବୁକା ପେଟେଭନା ବନ୍ଧୁ ଦେଁ ଲେଅର୍ଡ଼—

ମେନେଜର—ଏତେ ଟଙ୍କା ଆଜ୍ଞା ? ଏଥର ବୋଇଲ କମ୍ପାନୀ କମ୍ପେଲ ଆଜ୍ଞା—ଆରେ ଚତୁର—ଚତୁରାନନ୍ଦ—

[ ଟଙ୍କାତକ ଏ ପକେଟରୁ ସେ ପକେଟ କରି ଶେଷରେ ଟୋପି ତଳେ ରଖିଲେ ]

ଚତୁର—ହଜୁର୍—

ମେନେଜର—ଆରେ, ଗୁହ୍ନୀଁନୁ କଣ ବା ! ଯା, ଯୁଠି ଯେତେ କାଗଜପତ୍ର ଅଛି ସବୁ ଦିଅନା ! ଏପଟେ ତ waste paper ଓଜନ କରିଦବା, ସେପଟେ ଟଙ୍କା ଗଣିନେବା—ବୁଝିଲୁ ?

ଚତୁର—ଆଜ୍ଞା, ଏଇ ବନ୍ଧୁରେ ଏତେ ଟଙ୍କା ! ମତେ ଆଗରୁ କହିଲେନି । ମୁଁ ତ କେତେ କୁଆଡ଼େ ଫୋପାଡ଼ିଦେଲି ।

[ ଚତୁର ଭିତରକୁ ଗଲା ]

Digitized by srujanika@gmail.com

ଷ୍ଟିଭେନ୍‌ସ—Very wonderful writing--ମାନେ, ବଡ଼ ଚମତ୍କାର ଲେଖା । I like his books very much—ଆମେ ଉସ୍‌ଙ୍କ ବହିକୁ ଭଲନ୍ ପସନ୍ଦ କରୁଛେ । I think, they will be much appreciated in Hollywood—ମାନେ, Hollywoodରେ ଉସ୍‌ଙ୍କା ଭଲନ୍ ପସନ୍ଦ୍ ହୋଗା ।

[ ଚତୁର ଓ ରମା ପହଞ୍ଚିଲେ ]

ଚତୁର—ନାଅ, ଏକତେ ବହି ନବ ।

[ ଗୁଡ଼େ କାଗଜ ଜମା କଲ ]

ଷ୍ଟିଭେନ୍‌ସ—Oh ! so many books ! Take some more money—ଅଓର୍ ରୁପିୟା ଲଓ ।

[ ଆଉ ଟଙ୍କା ଦେଲେ ]

ରମା—ଏଇ ବହିରେ ଏତେ ଟଙ୍କା ! ମୁ ତ କେତେ ଲଥିରୁ ଲାଗୁଅଛି କରି ଫାଳିଦେଇଚ । କଉ, ଉଠ, ତୁମ ବହି ବକି ହେଇଚ ।

ମେନେଜର—କଉ ବଡ଼ବାବୁ, ଉଠ— ଶୋଇଚ କଣ ? ତୁମ ବହି ବକି ହେଇଚ ।

ବଡ଼ବାବୁ—( ଉଠି ) ବହି ବକି ହେଇଚ ?

ମେନେଜର—ହିଁ, ବହି ବକି ହେଇଚ । ଉଠ, ଦ'ଟା ବସ୍ତୁଉଠୁ କରିଦଅ । ଚତୁର, ଚତୁରାନନ୍ଦ—

ଚତୁର—ଆଜ୍ଞା !

ମେନେଜର—ଆରେ, ଗ୍ରହଁନୁ କଣ ? ଡାକ୍ତରକୁ ଡାକ, ବଡ଼ବାବୁଙ୍କ ଦେହ ଖରାପ !

Digitized by srujanika@gmail.com

ତୁର—ଯାଉଚ ଅଜ୍ଞା—

[ ଗୁଲଗଲ ]

ମନେଜର—ଅହା ! ଅମ ବଡ଼ବାବୁଙ୍କର କ ଲେଖା !

ଭେନ୍‌ସ—What idea ! What intelligence ! !

ମନେଜର—ଇଣ୍ଟେଲିଜେନ୍‌ସ ବୋଲି ଇଣ୍ଟେଲିଜେନ୍‌ସ—
ଏକଧାରରେ କବି, ସଙ୍ଗୀତଜ୍ଞ, ଚିତ୍ରକର, ନାଟ୍ୟକାର ଅଣ୍ଡ
ହ୍ୱାଟ୍ ନଟ୍ ଅଜ୍ଞା ! ହେଲେ, କାହା ଭାଲିନ୍ ? ପାଖରେ ପଣ୍ଡିତ କ
କୋଇଲି କମ୍ପାନୀ ବଡ଼ବାବୁ ଟି !

ନ୍ୟ ସମସ୍ତେ—ହେଁ, ହେଁ ( ହସିଲେ )

[ ହଠାତ୍ ଚତୁର ବବ୍ରତ ହୋଇ ପଡ଼ିଲ ]

ତୁର—ସାହେବ ଅସୁଚନ୍ତି ଅଜ୍ଞା !

ଭେନ୍‌ସ—ସାହେବ ଅସୁଚନ୍ତି ! କୋନ୍ ସାହେବ ?

ତୁର—ଗୋରା ସାହେବ ନୁହନ୍ତି ଅଜ୍ଞା ! ଅମ ଦେଶୀ ସାହେବ ।

ଭେନ୍‌ସ—ଓ, କାଳା ସାହେବ !

[ ଅଳ୍ପ ହସି ପାଇପ୍ ଟାଣିଲେ ]

ମନେଜର—ଏଁ, ସାହେବ ଅସୁଚନ୍ତି ! ଅମ ସାହେ ତନ୍ନଅଣିଆ
ପ୍ରୋପ୍ରାଇଟର ସାହେବ ଅସୁଚନ୍ତି, ମାନେ, ପୁଣି ଇନ୍‌ସ୍‌ପେକ୍‌ସନ୍
ପୁଣି ବସିଉଠ ? ଚତୁର—ଚତୁରାନନ୍ଦ—ଏ ମଧୁ ପୂର୍ଣ୍ଣିମାରେ
ସେ କାଳବୃନ୍ଦ କାହିଁକି ଅସିଲେ—

[ ଏଣିକି ତେଣିକି ଗୃହଁ ବବ୍ରତ ହେଲେ ]

ତୁର—ହେଇ, ଅସିଗଲେ ଅଜ୍ଞା !

Digitized by srujanika@gmail.com

ଶବେହ ]　　　　　　　　[ ଓକାଇଲ କମ୍ପାନୀ—

ମେନେଜର—ଅସିଗଲେ, ସାହେବ ଅସିଗଲେ—ଚତୁର,
ଚତୁରାନନ୍ଦ—ଚତୁର ଆନନ୍ଦ !

[ ପ୍ୟାଣ୍ଟ ଉପରକୁ ମୋଡ଼ୁ ମୋଡ଼ୁ ଚତୁର ଉପରେ ଡରରେ ଲମ୍ଫ ଦେଲେ ]

ଚତୁର—ଅଜ୍ଞା, ଏ କଣ କଲେ ? ଏକଦମ୍ ମାଢ଼ ବସିଲେ !
ଅଣ୍ଟା ଇଖମ ଅଚ୍ଛି ପର—

ଅନ୍ୟ ସମସ୍ତେ—ହାଃ, ହାଃ ( ହସିଲେ )

ଯ ବ ନି କା



ମୁଦ୍ରାକର—ଶ୍ରୀ ପଦ୍ମଚରଣ ଦାଶ
ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ—୨

Digitized by srujanika@gmail.com